# ପ୍ରଧାନ ପାଟ



ସଂକଳକ - ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

# ପ୍ରଧାନପାଟ
(କବିତା ସଂକଳନ)

ସଂକଳକ :
ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ ।

(ସତ୍ତ୍ୱ) ଶ୍ରୀମତୀ ଶୈଳବାଳା ନନ୍ଦ

ପ୍ରକାଶକ : ଶ୍ରୀଯୁକ୍ତ ନୈରତ ନନ୍ଦ
ବାରକୋଟ,ଦେବଗଡ

ମୁଦ୍ରଣ : କେ.କେ.ଗ୍ରାଫିକ୍ସ,ଦେବଗଡ

ପ୍ରଚ୍ଛଦ-ଅନିଲ କୁମାର ମିଶ୍ର

ପ୍ରଥମ ସଂସ୍କରଣ : ମକର ସଂକ୍ରାନ୍ତି-୨୦୦୩

ମୂଲ୍ୟ-୩୦/- ( ତିରିଶ ଟଙ୍କା ମାତ୍ର)

# ଉତ୍ସର୍ଗ-

ପ୍ରଧାନ ପାଟକୁ ***
ପ୍ରଧାନ ପାଟର ପ୍ରୀତିମୁଗ୍ଧ ଦର୍ଶକଙ୍କୁ *** ।

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ ।

*ଏ ସଂକଳନସ୍ଥ କବିତା ଗୁଡିକ ବିଭିନ୍ନ ସୂତ୍ରରୁ ସଂଗୃହୀତ । କବିତାର କବିମାନଙ୍କୁ ଏ ସୁଯୋଗରେ କୃତଜ୍ଞତା ଜଣାଉଛି ।

*ପ୍ରଧାନପାଟକୁ ଉପଜୀବ୍ୟ କରି ଅନେକ କବିତା ରଚିତ । ସବୁଗୁଡିକ ସଂଗ୍ରହ କରିବା ସଂଭବ ନୁହେଁ । ଯଦି କୌଣସି ଉଚ୍ଚକୋଟୀର କବିତା ରହିଯାଇଥାଏ ଦୟାକରି ଯୋଗାଇଦେଲେ ଉପକୃତ ହେବି । ପରବର୍ତ୍ତୀ ସଂସ୍କରଣକୁ ପରିପୂଷ୍ଟ କରିବାର ବାସନା ରଖୁଚି ।

*ପ୍ରଧାନପାଟ ପ୍ରକୃତିର ଏକ ଅନବଦ୍ୟ ଦାନ । ଏହାକୁ ସଂରକ୍ଷିତ କରିବା ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ । ପ୍ରଧାନପାଟ ପ୍ରତି ସାଧାରଣଙ୍କୁ ଆକର୍ଷିତ କରିବା ଏବଂ ଏ ମାଟିରୁ ସୃଷ୍ଟ ଉଜ୍ଜ୍ୱଳ ସାରସ୍ୱତ ଧାରାପ୍ରତି ପାଠକଙ୍କୁ ପରିଚିତ କରିବା ଏ ସଂକଳନର ଉଦ୍ଦେଶ୍ୟ ।

"ଜଙ୍ଗଲର ଜୟହେଉ
ମଣିଷର ଜୟହେଉ ।"

# ସୂଚୀ

## ପ୍ରଧାନ ପାଟ

୧-ଦାମୋଦର ମିଶ୍ର
୨-ହରିହର ମହାପାତ୍ର
୩-ରାଜୀବ ଲୋଚନ ଦେବ
୪-ଗଙ୍ଗାଧର ମେହେର
୫-ମଧୁସୂଦନ ରାଓ
୬-ଦାମୋଦର ମହାପାତ୍ର
୭-ପ୍ରତାପ ଗଙ୍ଗ ଦେବ
୮-ରମାକୁମାରୀ ଦେବୀ
୯-ଲୋଚନ ପ୍ରସାଦ ପାଣ୍ଡେୟ
୧୦-ବଳଭଦ୍ର ଦେବ
୧୧-ସୁଲୋଚନା ଦେଈ
୧୨-କୃଷ୍ଣଚନ୍ଦ୍ର କର
୧୩-ବାଣେଶ୍ୱର ମହାନ୍ତି
୧୪-ଗିରିଧାରୀ ନନ୍ଦ
୧୫-ଯୁଗଳ କିଶୋର ମିଶ୍ର
୧୬-ରାଧାମୋହନ ଗଡନାୟକ
୧୭-କୁଞ୍ଜ ବିହାରୀ ଦାଶ
୧୮-ଆଶା କୁମାରୀ ଦେବୀ
୧୯- ମଧୁସୂଦନ ଗୁରୁ
୨୦-ରାମଚନ୍ଦ୍ର ବ୍ରହ୍ମା
୨୧-ଗିରିଧାରୀ ନନ୍ଦ (I.A.S.)
୨୨-ଦୁର୍ଗା ପ୍ରସାଦ ଦ୍ୱିବେଦୀ
୨୩-ଯୋଗେଶ ଚନ୍ଦ୍ର ଦଳବେହେରା
୨୪-କୁମୁଦ ଚନ୍ଦ୍ର ଶତପଥୀ
୨୫-ସନ୍ତୋଷ ମହାପାତ୍ର
୨୬-ଜୟନ୍ତ କୁମାର ପୃଷ୍ଟି
୨୭-ପ୍ରଫୁଲ୍ଲ ଚନ୍ଦ୍ର ଗିରି
୨୮-ନୈରିତ ନନ୍ଦ
୨୯-ଜନ୍ମେଜୟ ସାହୁ
୩୦-ଜଗମୋହନ ମିଶ୍ର
୩୧-ପ୍ରଫୁଲ୍ଲ କୁମାର ମହାପାତ୍ର
୩୨-ଅନ୍ନଦା ଚରଣ ପାତ୍ର
୩୩-ଭୋଳେଶ୍ୱର ମିଶ୍ର
୩୪-ସନ୍ତୋଷ ଦେବତା
୩୫-ଫଣୀନ୍ଦ୍ର ଭୂଷଣ ନନ୍ଦ

## ବସନ୍ତ ନିବାସ

୧-ସଚ୍ଚିଦାନନ୍ଦ ଦେବ
୨-ସୋମନାଥ ଶତପଥି
୩-ଜଗନ୍ନାଥ ପଟ୍ଟନାୟକ
୪-ରାଜୀବ ଲୋଚନ ଦେବ
୫-ଜଳନ୍ଧର ଦେବ
୬-ଶଶି ଭୂଷଣ ରାୟ
୭-ଦୀନବଂଧୁ ପ୍ରଧାନ
୮-କୁମୁଦ୍‌ବତୀ ଯେମା
୯-ବ୍ରଜବଂଧୁ ମିଶ୍ର
୧୦-ଦୁଷ୍ମନ୍ତ ଦେବ୍
୧୧-ବୃନ୍ଦାବନ ଚନ୍ଦ୍ରଦେବ
୧୨-ବଳଭଦ୍ର ଦେବ
୧୩-ରତ୍ନାକର ଶର୍ମା
୧୪-ଗଦାଧର କୁଅଁର
୧୫-ହରିହର ମହାପାତ୍ର
୧୬-ଡମ୍ବରୁଧର ପ୍ରିୟାଦେବୀ
୧୭-ଲଳିତ ମୋହନ ଦେବ
୧୮-ଜୟନାରାୟଣ ଦେବ
୧୯-ରାମକୃଷ୍ଣ ସାହ
୨୦-କାଳୀଚରଣ ଦ୍ୱିବେଦୀ
୨୧-କୃଷ୍ଣ ଚନ୍ଦ୍ର ନନ୍ଦ
୨୨-ଭାଗିରଥି ଶର୍ମା

# ପ୍ରଧାନ ପାଟ : ଏକ ସାରସ୍ୱତ ନିରୀକ୍ଷଣ

ରାଧାନାଥ ଯୁଗୀୟ ସାରସ୍ୱତ ପରଂପରାକୁ ପରିପୁଷ୍ଟ କରିବାରେ ଯେଉଁ କେତୋଟି ଅଞ୍ଚଳ ମୁଖ୍ୟତଃ ଦାୟୀ ସେ ଭିତରେ ବାମଣ୍ଡା ଅନ୍ୟତମ । ବାମଣ୍ଡାର ସାରସ୍ୱତ ପୃଷ୍ଠପୋଷକତା କେବଳ ଯେ ଆଧୁନିକ ସାହିତ୍ୟର ପ୍ରାଣ ପ୍ରତିଷ୍ଠା କରିଗଲା ତା' ନୁହେଁ ବରଂ ଏ ସାହିତ୍ୟକୁ ନିଜର ଅନନ୍ୟ ଦାନରେ ଋଦ୍ଧିମନ୍ତ କରିଥିଲା । ଅନେକ ଚିରନ୍ତନ ସାହିତ୍ୟ ସୃଷ୍ଟିର କ୍ଷେତ୍ର ପ୍ରସ୍ତୁତିରେ ଏ ଅଞ୍ଚଳର ଅବଦାନ ଅନସ୍ୱୀକାର୍ଯ୍ୟ । ତେଣୁ ସାରସ୍ୱତ ବାମଣ୍ଡାର ସାହିତ୍ୟ ସେବୀଗଣ ଉତ୍କଳୀୟ ବାଙ୍ମୟରେ ପ୍ରତିଷ୍ଠା ଲଭିଥିଲେ । ସଂବଲପୁର ହିତୈଷିଣୀ ଓ ବିଜୁଳି ପତ୍ରିକା ମାଧ୍ୟମରେ ଆଧୁନିକ ସାହିତ୍ୟର ପକ୍ଷ ସମର୍ଥନ କରିଗଲେ ।

ବାମଣ୍ଡାର ଆଲୋଚନା ସଭା ଏବଂ ଦରବାରର ପଣ୍ଡିତ ସଭା ସବୁବେଳେ ଉତ୍କୃଷ୍ଟ ସାହିତ୍ୟ ଚର୍ଚ୍ଚା ଏବଂ ସୃଜନ କର୍ମରେ ବ୍ୟସ୍ତ ଥିଲା । ସାହିତ୍ୟ ସେବା ଏବଂ ସାହିତ୍ୟ ପ୍ରେମୀ ରାଜାଙ୍କ ପୃଷ୍ଠ ପୋଷକତା ,ଏକାଧିକ ସାହିତ୍ୟିକଙ୍କ ସହାବସ୍ଥାନ ଓଡିଶାର ଅନ୍ୟାନ୍ୟ ପ୍ରାନ୍ତର ସାହିତ୍ୟିକଙ୍କୁ ଆକୃଷ୍ଟ କରୁଥିଲା । ଏହା ବ୍ୟତିରେକେ ଦେବଗଡ ସନ୍ନିକଟ ପ୍ରଧାନ ପାଟ ଜଳପ୍ରପାତର ନୈସର୍ଗିକ ଶୋଭା ସଂପଦ ଥିଲା ଅନ୍ୟତମ ଆକର୍ଷଣ। ସାରସ୍ୱତ ସାଧକଙ୍କ ସାନ୍ନିଧ୍ୟରେ ପ୍ରଧାନ ପାଟ ହୋଇଉଠିଥିଲା ମହୀୟାନ: ଅନ୍ୟପକ୍ଷରେ ପ୍ରଧାନ ପାଟର ପ୍ରାକୃତିକ ଶୋଭା ସାରସ୍ୱତ ପ୍ରେମୀଙ୍କୁ କରି ତୋଳିଥିଲା ମୁଖର । ତାହାରି ନାଚିଶାତୋଷ କଳନାଦିନୀ ସବୁଜିମା ଭିତରେ ସୃଜନ ସ୍ୱପ୍ନରେ ମସ୍‌ଗୁଲ ହୋଇଉଠିଥିଲେ ସୌନ୍ଦର୍ଯ୍ୟାଚାରୀ କବିବୃନ୍ଦ । ଅନେକ ଯୁଗାନ୍ତକାରୀ କାବ୍ୟର ନାନ୍ଦୀପାଠ ମୁଖର ହୋଇ ଉଠିଥିଲା ଏ ପ୍ରପାତର ବଂଦନାରେ । କେବଳ ବାମଣ୍ଡାର ରସଲିପ୍ସୁ ସାହିତ୍ୟିକଗଣ ଏହାକୁ ଅଭିମୁଖ୍ୟ କରି ନିଜର କାବ୍ୟ ରଚନାରେ ବ୍ରତୀ ହେଲେ ତା'ନୁହେଁ ଓଡିଶାର ଅନେକ କବିଲେଖକ ଏହାର ଶାଶ୍ୱତ ରୂପ କଳାରେ ମୁଗ୍ଧ ହୋଇ ନିଜର ସାରସ୍ୱତ ସମ୍ମାନ ଜଣାଇଲେ ।

ବାମଣ୍ଡାର ସାରସ୍ୱତ ପୃଷ୍ଠଭୂମି ପ୍ରଧାନପାଟର ସୌନ୍ଦର୍ଯ୍ୟ ଅବଗାହନରେ ରସସିକ୍ତ ହୋଇ ଉଠିଥିଲା । ପ୍ରତିଟି ସାହିତ୍ୟିକ ପ୍ରକୃତି ଆଡେ ମୁହଁ ବୁଲାଇଲା ବେଳେ ସ୍ପଷ୍ଟ ହୋଇ ଉଠୁଥିଲା ପ୍ରପାତର ନୈସର୍ଗୀୟ ଶୋଭା । ଏହାର ଗହନ ଜଙ୍ଗଲ,ଆକାଶଚୁମ୍ବୀ ପର୍ବତର ତୁଙ୍ଗିମା,ସ୍ପନ୍ଦିତ ପ୍ରପାତର କଳନାଦ,ନଭଚାରୀ ପକ୍ଷୀଙ୍କ କାକଳୀ,ଭୂମାବ୍ୟାପୀ ତପସ୍ୱୀ ବେଶ,ସୂର୍ଯ୍ୟୋଦୟ ଏବଂ ସୂର୍ଯ୍ୟାସ୍ତର ବର୍ଣ୍ଣବିଭା.ସର୍ବୋପରି ପ୍ରକୃତିର ଶାନ୍ତ ସମାହିତ ରୂପ କବି,ଲେଖକ,ଦାର୍ଶନିକ,ଚିତ୍ରକାରମାନଙ୍କୁ ଆକୃଷ୍ଟ କରିଥିଲା,ଉତ୍ସାହିତ କରିଥିଲା ମୌଳିକ ସୃଜନାତ୍ମକ କଳାରେ ଆତ୍ମ ବିଭୋର ହେବାପାଇଁ ।

,ପ୍ରଧାନପାଟକୁ ଭିତ୍ତିକରି ଶହେବର୍ଷର ସାରସ୍ୱତ ପ୍ରୟାଣର ସମ୍ୟକ୍ ସୂଚନା ଦେବା ଏ ଭୂମିକାର ଇତିକଥା ।

ପ୍ରଧାନପାଟକୁ ଉପଲକ୍ଷ୍ୟ କରି ଅଜସ୍ର କାବ୍ୟ କବିତା ରଚିତ । ଏଗୁଡ଼ିକୁ ନିମ୍ନ ପ୍ରକାରେ ଶ୍ରେଣୀଭୁକ୍ତ କରାଯାଇ ପାରେ ।

୧: ପ୍ରଧାନପାଟକୁ ଭିତ୍ତିକରି କାବ୍ୟ କବିତା ।

୨: ପ୍ରଧାନପାଟ ପାଦଦେଶରେ ସଚ୍ଚିଦାନନ୍ଦ ଦେବଙ୍କ ଦ୍ୱାରା ନିର୍ମିତ ଶୈଳ ନିବାସ "ବସନ୍ତ ନିବାସ"କୁ ଉପଜୀବ୍ୟ କରି ରଚିତ କବିତା ।

୩: ପ୍ରଧାନପାଟ ଦ୍ୱାରା ଅନୁପ୍ରାଣିତ ହୋଇ ପ୍ରକୃତିର ମହାଜାଗତିକ ରୂପର ବୟାନ ।

ଏ ତିନୋଟି ପର୍ଯ୍ୟାୟରେ ପ୍ରଧାନପାଟକୁ ନେଇ ଗଢିଉଠିଥିବା ସାରସ୍ୱତ ପରଂପରାର ବିକାଶ ଧାରାକୁ ପର୍ଯ୍ୟାଲୋଚନା କରାଯାଇପାରେ । ଉଲ୍ଲିଖିତ ପ୍ରଥମ ଦୁଇଟି ପ୍ରସଙ୍ଗଭୁକ୍ତ କବିତା ଗୁଡିକର ଅଧ୍ୟୟନ ହିଁ ଏ ନିବଂଧର ପରିସର ଭୁକ୍ତ । ତୃତୀୟ ପର୍ଯ୍ୟାୟର କବିତା ଗୁଡିକ ପ୍ରତ୍ୟକ୍ଷ ଭାବରେ ପ୍ରଧାନପାଟକୁ ପ୍ରତିନିଧିତ୍ୱ ନ କଲେ ମଧ୍ୟ ଅବଚେତନ ସ୍ତରରେ ପ୍ରଧାନପାଟର ରୂପଚର୍ଯ୍ୟାର ପ୍ରାକୃତିକ ଅଭିନିବେଶକୁ ଗ୍ରହଣ କରିଛନ୍ତି । ଏ କବିତା ଗୁଡିକ ବିଶ୍ଳେଷଣ ନ କଲେ ପ୍ରଧାନପାଟକୁ ନେଇ ଗଢିଉଠିଥିବା ସାରସ୍ୱତ ପରଂପରା ବ୍ୟାହତ ହେବ । ତେଣୁ ଏ ଗୁଡିକର ସୂଚନାତ୍ମକ ବିବରଣୀ ପ୍ରଦତ୍ତ ହୋଇଛି । ଅଧ୍ୟୟନର ସୁବିଧା ଦୃଷ୍ଟିରୁ ଉଲ୍ଲିଖିତ ବିଷୟ ସମୂହ କୁ ନିମ୍ନ ପ୍ରକାରେ ଆଲୋଚନା କରାଯାଇପାରେ ।

(କ) କବିର ଅବଚେତନର ପ୍ରଧାନପାଟ ବା ପ୍ରଧାନପାଟର ସାରସ୍ୱତ ଅନୁପ୍ରେରଣା ।
(ଖ) ପ୍ରଧାନପାଟ:ଏକ ସାରସ୍ୱତ ସର୍ବେକ୍ଷଣ ।
(ଗ) କବି ଦୃଷ୍ଟିରେ ପ୍ରଧାନ ପାଟ ।

(କ) ପ୍ରଧାନ ପାଟର ସାରସ୍ୱତ ଅନୁପ୍ରେରଣା: - କବିଟିଏ ଲେଖନୀ ଧାରଣ ପୂର୍ବରୁ ନିଜର ପରମ୍ପରା ଏବଂ ପରିବେଶକୁ ଅବଲୋକନ କରେ । ବସ୍ତୁ ଜଗତରେ ବିରାଜିତ ଧୂଳି ମାଟିର ସଂସାର, ମାଟି ପାଣି ପବନର ଶାଶ୍ୱତ ଲୀଳା, ପ୍ରକୃତିର ଶୋଭା ସଂଭାର ଦ୍ୱାରା ଅନୁପ୍ରାଣିତ ହୁଏ । ଜହ୍ନ, ଆକାଶ, କଇଁ,ସମୁଦ୍ର,ସବୁଜ ଅରଣ୍ୟ, ନଦୀ, ପର୍ବତ ଝରଣା ପ୍ରଭୃତି ଅନଶ୍ୱର ଆଲେଖ୍ୟ ଭିତରୁ ସେ ସୃଷ୍ଟିର ରସଦ ସଂଗ୍ରହ କରେ । ଏ ଦୃଷ୍ଟିରୁ ଦେବଗଡର ତଥା ବହିରାଗତ ସାହିତ୍ୟିକ ମାନଙ୍କୁ ପ୍ରଧାନପାଟ ପ୍ରପାତର ଅନନ୍ୟ ଶୋଭା ଆକୃଷ୍ଟ କରିଛି । ଏ ଆକର୍ଷଣ ପ୍ରତିଫଳିତ ହୋଇଛି ସେମାନଙ୍କ ମାନସ ଭୂମିରେ । ସୃଷ୍ଟି ହୋଇଛି ଗୋଟିଏ ପରେ ଗୋଟିଏ ମନୋରମ କାବ୍ୟ ।

ରାଜକବି ସଚ୍ଚିଦାନନ୍ଦଙ୍କ ପ୍ରକୃତି,ବୈଦିକ ପ୍ରକୃତି, ଯୌନ ନିର୍ବାଚନ, ବଳଭଦ୍ର ଦେବଙ୍କ ବାଲସ୍ମୃତି , ଭକ୍ତ କବି ମଧୁସୂଦନଙ୍କ ବାମଣ୍ଡା ରାଜ ପ୍ରଶସ୍ତି, ହିମାଚଳେ ଉଦୟ ଉତ୍ସବ, ଦୀନବନ୍ଧୁ ପ୍ରଧାନଙ୍କ 'ପର୍ବତ' ଲିଙ୍ଗରାଜ ପାଣିଗ୍ରାହିଙ୍କ ବୁଢ଼ୀ ପର୍ବତ,ହରିହର ମହାପାତ୍ରଙ୍କର ଖଣ୍ଡାଧାର, ନାଏଗ୍ରା ପ୍ରଭୃତି କାବ୍ୟ କବିତାର ଅନ୍ତସ୍ଥ ପ୍ରେରଣା ଭୂମି ପ୍ରଧାନ ପାଟ ।

ପ୍ରଧାନ ପାଟର ପାଦ ଦେଶରେ ୧୯୦୯ରେ ରାଜା ସଚ୍ଚିଦାନନ୍ଦ "ବସନ୍ତ ନିବାସ" ଏବଂ "ଲୁଳିତ ବାସନ୍ତ " ( ଅପଭ୍ରଂଶ ଲଳିତ ବସନ୍ତ ) ନାମକ ଦୁଇଟି ଶୈଳ ନିବାସ ନିର୍ମାଣ କରାଇଥିଲେ । ଲଳିତ ବାସନ୍ତରେ ଗ୍ରୀଷ୍ମକାଳୀନ ରାଜାଙ୍କ ଦରବାର ଚାଲେ । ବସନ୍ତ ନିବାସ ବହିରାଗତ କବି ସାହିତ୍ୟିକଙ୍କ ରହଣୀ ପାଇଁ ଏକ ଉପଯୁକ୍ତ ସ୍ଥାନ । ବସନ୍ତ ନିବାସ ଚତ୍ୱରରେ ମାର୍ବଲ ପଥରରେ ବିଭିନ୍ନ କବିଙ୍କ ବସନ୍ତ ବୃତ୍ତରେ ରଚିତ ପଦ୍ୟ ସ୍ଥାନିତ ହୋଇଛି । ସମ୍ମୁଖ ଭାଗରେ ସଚ୍ଚିଦାନନ୍ଦଙ୍କ " ବସନ୍ତ ନିବାସର ଉଦ୍‌ବୋଧନ ଅମିତ୍ରାକ୍ଷର ଛନ୍ଦରେ ଖୋଦିତ ।

"ସାରସ୍ୱତ ଉପବନ ବିହାର ରସିକ
ଦେବଦୁର୍ଗ- କବିକୁଳ,ଶାଶ୍ୱତ ନୟନେ
ଦେଖୁଥିଲେ ପ୍ରଭାମୟୀ ନିର୍ଝରିଣୀ ବେଣୀ
ପବିତ୍ର ଅମଳ ହର ଶୈଳ ହିମବାନ-
ଗଙ୍ଗା ଉପବୀତ ସମ ପ୍ରକୃତି ଆଲେଖ୍ୟ ;
******* ***** *****
ପ୍ରପାତି ବିର୍ଲୁ ଉତ୍ଥିତ ସମୀର ଲହରେ
ଲହରାଇ ଭାବ ଉର୍ମି କବିକୁଳ ହୃଦେ
ବସନ୍ତର ନିତ୍ୟ ଲୀଳା ପ୍ରକୃତି ଦେହରେ
ଦେଖି ବୋଲାଇଲା ଏହୁ ବସନ୍ତ ନିବାସ । (ତା ୨୬-୦୯-୧୯୦୯ )

ବସନ୍ତ ନିବାସ ଉପରେ ଅନେକ କବିଙ୍କ ରଚିତ ଶାଶ୍ୱତ ପଂକ୍ତି ସାରସ୍ୱତ ଶୋଭା ସଂଭାରରେ ଏ ନିବାସରେ ସଜ୍ଜିତ ହୋଇଛି ।

ବସନ୍ତ ନିବାସର ପୂର୍ବ ଦିଗରେ ଲୁଳିତ ବାସନ୍ତ ଶୈଳ ନିବାସ ନିର୍ମିତ । ମୃଦୁଳ ବସନ୍ତ ାନିଳ ଦ୍ୱାରା ଏ ସ୍ଥାନ ସର୍ବଦା କଂପିତ ହେଉଥିବାରୁ ଆଳଙ୍କାରିକ ରାଜା ମହୋଦୟ ଏହାରନାମ " ଲୁଳିତ ବାସନ୍ତ " ରଖିଛନ୍ତି ।

ଲୁଳିତ କେଳିଲୋଳ ମଳୟାନିଳର ସ୍ତୁତିରୂପେ ପ୍ରାଚୀନ ଆର୍ଯ୍ୟ ସାହିତ୍ୟରୁ ଉଦ୍ଧୃତ କରି ରାଜକବି ମାର୍ବଲ ପ୍ରସ୍ତରରେ ଖୋଦିତ କରି ନିବାସରେ ସଂଯୁକ୍ତ କରିଛନ୍ତି ।

ଓଁ ତତ୍ ସତ୍

"ବାତ ଆବାତୁ ଭେଷଜଂ ଶଂଭୁ ମୟୋ ଭୁନୋହୃଦେ
ପ୍ରାଣ ଆୟୁଂଷି ତାରିଷତ୍
ଯଦି ଦୋ ବାତତେ ଗୃହେଽମୃତସ୍ୟ ନିଧିର୍ହିତଃ
ତତୋ ନୋ ଦେହ ଜୀବସେ "।
( ଋ: ୧୦ମ ୧୮୬ସୂ )

ତା ୨୦-୦୫-୧୯୧୧ ରେ ଭକ୍ତ କବି ଦେବଗଡ ଆସି ବସନ୍ତ ନିବାସରେ ସପ୍ତାହ କାଳ ଅବସ୍ଥାନ କରିଥିଲେ । ତାଙ୍କ ଅବସ୍ଥାନ ସମୟରେ ସେ ରାଜସଭାରେ " କବିତା ଓ କଳ୍ପନା" ଉପରେ ବକ୍ତୃତା ଦେଇଥିଲେ । ଅନେକ ସାହିତ୍ୟିକ ପଣ୍ଡିତଙ୍କ ଗହଣରେ ସଭାପତିତ୍ୱ କରିଥିଲେ ରାଜା ସଚ୍ଚିଦାନନ୍ଦ ଦେବ । ସନ୍ଧ୍ୟାରେ କଚେରି ସମ୍ମୁଖ ସଭାରେ " ଅଭିବ୍ୟକ୍ତିବାଦ " ଶୀର୍ଷକରେ ବକ୍ତୃତା ଦେଇଥିଲେ ଭକ୍ତ କବି । ତା ୨୮-୦୫-୧୯୧୧ ରବିବାର ସ୍କୁଲ ଗୃହରେ ଏକ ସାହିତ୍ୟ ସଭା ହୋଇଥିଲା । ଉକ୍ତ ସଭାରେ " ବାମଣ୍ଡା ରାଜ ପ୍ରଶସ୍ତି " ଗୁରୁ ଗଂଭୀର ଧ୍ୱନିରେ ପାଠକରି କବି ରାଜାଙ୍କୁ ଅର୍ପଣ କରିଥିଲେ ।

ତାଙ୍କରି ଅବସ୍ଥାନ ମଧ୍ୟରେ ବାମଣ୍ଡା ରାଜ ପ୍ରଶସ୍ତି ବସନ୍ତ ନିବାସ ଠାରେ ରଚିତ ହୋଇ ହିତୈଷଣୀ ପ୍ରେସରେ ମୁଦ୍ରିତ ହୋଇଥିଲା । ଏହି ସମୟରେ ପ୍ରଧାନ ପାଟର ଅନିନ୍ଦ୍ୟ ପ୍ରାକୃତିକ ରୂପ ମାଧୁରୀ,ଯୋଗୀ ସୁଲଭ ଶାନ୍ତ ବାତାବରଣ " ହିମାଚଳେ ଉଦୟ ଉତ୍ସବ " ରଚନା କରିବାକୁ କବିଙ୍କୁ ପ୍ରେରଣା ଯୋଗାଇଥିଲା । ଫଳରେ ଏ କବିତାର ଅନେକ ଅଂଶ ବସନ୍ତ ନିବାସ ରହଣୀ କାଳରେ ହିଁ ରଚିତ ହେବା କଥା କବି ବାମଣ୍ଡାର ସାହିତ୍ୟିକ ବୃନ୍ଦାବନ ନାଥ ଶର୍ମା ଏବଂ ଦୀନବନ୍ଧୁ ଗଡନାୟକଙ୍କ ଠାରେ ପ୍ରକାଶ କରନ୍ତି ।

ପ୍ରକୃତିର ମହାମହିମ କୋଳରେ ଅବସ୍ଥାପିତ କବିଚିତ୍ତ ପ୍ରଧାନ ପାଟର କୈଦନ୍ତା ପର୍ବତକୁ ନିମିତ୍ତ କରି ହିମାଳୟର ଉଦୟ ଉତ୍ସବ ପ୍ରତ୍ୟକ୍ଷ କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଭାଷାର ନବ ରୂପାନ୍ତର ଦେଖି କବି ମନ୍ତ୍ରମୁଗ୍ଧ ହୋଇଛନ୍ତି ।

ଏ ଅମୃତ ଲଗ୍ନେ ଉଭାହୋଇ ଗିରିକକ୍ଷେ
ଉଦୟ-ଉତ୍ସବ ଲୀଳା ଦେଖିଲି ପ୍ରତ୍ୟକ୍ଷେ
ଏବେ ଦ୍ୟାବା-ପୃଥିବୀର ପରିଣୟୋତ୍ସବ
ଚିର ପୁରାତନ ପୁଣି ନିତ୍ୟ ନବ ନବ" ( ହିମାଚଳେ ଉଦୟ ଉତ୍ସବ )

ବାମଣ୍ଡାକୁ ଏହି ସମୟରେ କାବ୍ୟ ବିନୋଦ ଲୋଚନ ପ୍ରସାଦ ପାଣ୍ଡେୟଙ୍କର ଆଗମନ ହୁଏ । ସେ ମଧ୍ୟ ବସନ୍ତ ନିବାସର ଅମୃତମୟ ପରିବେଶରେ ଆତ୍ମହରା ହୋଇ ଗାଇ ଉଠିଛନ୍ତି

" ବିହଗ କରେ ରହେ ହେଁ, ଗାନ ଆନନ୍ଦ କାରୀ
ପବନ ବହଇହାହେଁ,ସ୍ନିଗ୍ଧ ସନ୍ତାପ ହାରୀ
ଅମୃତ ମଧୁର ଛାୟା, ଶୈଳ ଶୋଭା ଉଦାରା
ଝର ଝର ଝରଟୀ ହେଁ, ନୀରକୀ ଶୁଭ୍ର ଧାରା ।

ପ୍ରଧାନ ପାଟର ଅନୁପ୍ରେରଣା ରାଜ କବି ସଚ୍ଚିଦାନନ୍ଦଙ୍କୁ ପ୍ରକୃତି,ବୈଦିକ ପ୍ରକୃତି ଏବଂ ଯୌନ ନିର୍ବାଚନ ପରି ବିଜ୍ଞାନ ଏବଂ ପ୍ରକୃତି ଗର୍ଭିତ କାବ୍ୟ ରଚନାରେ ସହାୟ କରିଛି । ଯେଉଁଠି ପ୍ରପାତ, ଜଙ୍ଗଲ ବା ପର୍ବତର ବର୍ଣ୍ଣନାଟିଏ ଦେଇଛନ୍ତି ସେଇଠି ସ୍ପଷ୍ଟ ହୋଇ ଉଠିଛି ପ୍ରଧାନ ପାଟର ଚିତ୍ର । ଅବଚେତନ ତଳୁ ଉଙ୍କି ମାରିଛି ପ୍ରକୃତି ପ୍ରତି ନିଜର ସମ୍ମାନବୋଧ । ନିଜର ପରମ ଅଗ୍ରଜ ରୂପେ ସେ ପର୍ବତକୁ ସମ୍ବୋଧନ କରିଛନ୍ତି । ନିଜ ବଂଶର ପ୍ରତିଟି ରାଜ ପୁରୁଷଙ୍କୁ ଏ ପର୍ବତ ପ୍ରତ୍ୟକ୍ଷ କରିଛି । ମହାକାଳର ପ୍ରତିଟି ଶାଶ୍ୱତ ଲୀଳାକୁ ଅଙ୍ଗେ ନିଭେଇଛି । ଏ ପ୍ରସଙ୍ଗରେ ପ୍ରକୃତିପ୍ରତି କବିଙ୍କ ସମ୍ମାନସୂଚକ ଭାଷ୍ୟ ବେଶ୍ କଳାତ୍ମକ ।

" ନଗରାଜ ! କୋଟି କୋଟି ଜୀବର ପୋଷକ
ସୋଦର ସମ୍ଭାଷି ତୋରେ ଡାକିଲି ଆଦରେ
ମୋ ଅଗ୍ରିଯ ଯେଣୁ ପୁଣି ଅଗ୍ରିୟ-ଅଗ୍ରିୟ
ପାରିଧି ବେଶରେ କେତେ ମୃଗୟୁ ସହିତେ
ତୋର ଅଙ୍କେ ଯାପିଛି ମୁଁ ଜାଗ୍ରତେ ଯାମିନୀ "

ପାରିଧି ବେଶରେ ପ୍ରଧାନ ପାଟରେ ବିଚରଣ କରିବାର ସ୍ମୃତି କବିଙ୍କୁ ଆଛନ୍ନ କରିଛି । ଅଭିବ୍ୟକ୍ତି ବାଦର ନିଗୁଢ ତତ୍ତ୍ୱକୁ କାବ୍ୟ କଳାରେ ଭୂଷିତ କଲାବେଳେ ମଧ୍ୟ କବିଙ୍କର ବାଲ୍ୟ ଲୀଳା ଭୂମୀ ପ୍ରଧାନ ପାଟ ସ୍ମରଣ ହୋଇଛି । ଯୌନ ନିର୍ବାଚନରେ ବିଭିନ୍ନ ଜୀବଙ୍କ ନୈସର୍ଗିକ ମିଳନର ବୃତ୍ତାନ୍ତ ଦେଲାବେଳେ ମଧ୍ୟ କବି ପ୍ରଧାନ ପାଟକୁ ଭୁଲିଯାଇ ନାହାଁନ୍ତି । ବରଂ ବିଭିନ୍ନ ପଶୁ ପକ୍ଷୀଙ୍କ ମିଳନର ଦୃଷ୍ଟାନ୍ତ ସେ ପ୍ରଧାନ ପାଟରେ ପ୍ରତ୍ୟକ୍ଷ କରିଛନ୍ତି ।

*** *** ****

ଉଡାଇ ବାୟୁ ହିଲ୍ଲୋଳେ ସ୍ୱପୁଚ୍ଛ ଚାମର
ନିକଷ ରଜଟଛଟା ପ୍ରପାତର ଦେହେ
ରଚି, ରଚୁଅଛି ପ୍ରିୟା-ହୃଦୟେ ନିରତେ
ନିର୍ମଳ,ସାତ୍ତ୍ୱିକ ପ୍ରେମ,ଦାଂପତ୍ୟ ଜୀବନେ "

ଏ କାବ୍ୟର ପ୍ରାରଂଭିକ ପର୍ଯ୍ୟାୟରେ ସାଂଧ୍ୟ ବର୍ଣ୍ଣନା ମଧ୍ୟ ପ୍ରଧାନପାଟକୁ ଇଂଗିତ କରେ ।

ପାଟଳ ପୀତ ହରିତ ନୀଳିମ ମଣ୍ଡିତ
ଗଗନ-ବିତାନ-ତଳେ ଦୂର ଦିଗନ୍ତରେ
ଦିଗ୍‌ବଧୂ ମୁକୁଟାୟିତ ଅଚଳ ଶୃଙ୍ଖଳ
ଶିଖର ପରଶ କରି ଅରୁଣ ଅରୁଣ
ଦିଶୁଥିଲେ ପଦ୍ମରାଗ ଚୂଡାମଣି ପରି

*** *** ****

ଅଗ୍ରବର୍ତ୍ତୀ ଶୈଳ ଶ୍ରେଣୀ-ଶିଖର-ଦାଢରେ
ଜ୍ୱଳଇ ଜ୍ୱଳନୋପମ ତରଣି-ତେଜସ," (ଯୌନ ନିର୍ବାଚନ)

"ବୈଦିକ ପ୍ରକୃତି'କାବ୍ୟ ବାଳଗଙ୍ଗାଧର ତିଳକଙ୍କ "The Arctic Home in the vedas" ଅବଲମ୍ବନରେ ଲିଖିତ । ଏ କାବ୍ୟରେ ସୁମେରୁ ଆର୍ଯ୍ୟ.ମାନଙ୍କର ପ୍ରଥମ ବାସସ୍ଥାନ ରୂପେ ବର୍ଣ୍ଣିତ ହୋଇଛି । ସୁମେରୁ ତଥା ପ୍ରାକୃତିକ ଶୋଭାକୁ ବର୍ଣ୍ଣନା କଲାବେଳେ କବି ପ୍ରଧାନପାଟ ଦ୍ୱାରା ଅନୁପ୍ରେରିତ ହୋଇଛନ୍ତି ।

'ମାୟା ଶବରୀ'କାବ୍ୟ ପ୍ରଧାନପାଟ କୋଳରେ କବି ସମାପ୍ତ କରିଥିଲେ । ଏହାର ସାରସ୍ୱତ ପ୍ରମାଣ ଦିଅନ୍ତି କବି ଦାମୋଦର ମିଶ୍ର "ପ୍ରଧାନ ପାଟ"କାବ୍ୟରେ

"ଶ୍ରୀ ସଚ୍ଚିଦାନନ୍ଦ ଦେବ ନୃପାତ୍ମଜ
ଯେ ରାଜ ତନୁଜେ ଅଟନ୍ତି ଅଗ୍ରଜ ।
ସରସ୍ୱତୀ ପାଦପଦ୍ମ ଆରାଧନା
କରିବାକୁ ଯେବେ ବଳିଲା ବାସନା
ଶିକ୍ଷା ଲାଭକରି ସେହି ବିଦ୍ୟାବାସେ
ପରିଶେଷେ ପୁଣି ଆସିଲେ ତୋ ପାଶେ
ଦୁର୍ଗାଙ୍କର ମାୟା ଶବରୁଣୀ ବେଶ
ତୋ ସହାୟେ ତୋର ପାଶେ କଲେ ଶେଷ ।"

'ବଳଭଦ୍ର ଦେବଙ୍କ 'ବାଲ୍ୟସ୍ମୃତି' ଦୀନବଂଧୁ ପ୍ରଧାନଙ୍କ 'ପର୍ବତ' ଲିଙ୍ଗରାଜ ପାଣିଗ୍ରାହୀଙ୍କ 'ବୁଢ଼ୀପର୍ବତ'ଏବଂ ହରିହର ମହାପାତ୍ରଙ୍କ'ଖଣ୍ଡାଧାର'ଓ"ନାୟେଗ୍ରା"କାବ୍ୟ କବିତା ଅନ୍ତରାଳରେ ପ୍ରଧାନପାଟର ଚିତ୍ର ପରୋକ୍ଷ ଭାବେ ପ୍ରତିଭାତ ହୁଏ । 'ନାୟେଗ୍ରା' କବିତାର ସୃଷ୍ଟିଭୂମି ପ୍ରଧାନପାଟ । କବି ମାନସ ଭୂମିରେ ପ୍ରଧାନପାଟର ଅବସ୍ଥିତି ଅଥଚ କଳ୍ପନାଚକ୍ଷୁରେ ନାୟେଗ୍ରାକୁ ପ୍ରଦକ୍ଷିଣ କରୁଛି ଆମେରିକାରେ, କେବଳ ନାୟେଗ୍ରା ନୁହେଁ ବାମଣ୍ଡାର ଲବ୍ଧ ପ୍ରତିଷ୍ଠ ସାହିତ୍ୟିକଗଣ ଯେଉଁଠି ପ୍ରପାତଟିଏ ର ଶୋଭା ଦର୍ଶନ କରିଛନ୍ତି,ସେଇଠି ମାନସ ଭୂମିରେ ପ୍ରଧାନ ପାଟକୁ ବିନମ୍ର ସଂଭାଷଣ ଜଣାଇଛନ୍ତି । ପ୍ରାବଂଧିକ ଜଳନ୍ଧର ଦେବ ଭ୍ରମଣୋପଲକ୍ଷେ ଯାଇ ଅଜନ୍ତା ନିକଟସ୍ଥ ବାଘୋରା ଜଳ ପ୍ରପାତକୁ ଅବଲୋକନ କଲାବେଳେ ବାଲ୍ୟ ସମୟର ସେହି ଦିବଂଗତ ପଂକ୍ତି ଅନୁରଣିତ ହୋଇଛି ।

"ପ୍ରଧାନପାଟର ପ୍ରପାତ ଭୀଷଣ
ନିର୍ଜନ ଗହନେ ଗର୍ଜେ ଅନୁକ୍ଷଣ
ନୀର ଆସ୍ତରଣ ଭୃଗୁ ପ୍ରସ୍ଥେ ଯାର
ହୀରକକୁ ଦିଏ ସହସ୍ର ଧିକ୍କାର । (ରାଧାନାଥ)

ଏଥି ସହିତ ଜଳନ୍ଧର ସ୍ୱୀକାର କରନ୍ତି:-"ପୃଥିବୀ ଶୋଭାର ଭଣ୍ଡାର, ପ୍ରାକୃତିକଦୃଶ୍ୟ ଏକ ସହିତ ଅପର ତୁଳନୀୟ ନୁହେ । ପ୍ରତ୍ୟେକର ଶୋଭା ଭିନ୍ନ,ମାତ୍ର ବାଲ୍ୟକାଳରୁ ଯାହାର ଶୋଭା ହୃଦୟରେ ପଥର ଗାର ପରି ଅଙ୍କିତ ତାଙ୍କୁ ଭୁଲିଯିବାକୁ ସାଧ୍ୟ କାହାର ? ବାଲ୍ୟ କାଳର ମୁଖସ୍ଥ କବିତାଟି,ଗ୍ରାମ୍ୟ ଦୃଶ୍ୟଟି ମାତୃ ସ୍ନେହଟି,ମାତୃ

ଭୂମିଟି ହୃଦୟରେ ଅତି ଉଚ୍ଚସ୍ଥାନ ଅଧିକାର କରି ବସିଅଛି । ଯେଉଁଠାକୁ ଯାଅ ଯେଉଁଦୃଶ୍ୟ ଦେଖ,ଯେଉଁ ସ୍ନେହପାଅ,ସମସ୍ତ ଏମାନଙ୍କ ତଳେ,ଏଣୁ କବି ଗାଇ ଅଛନ୍ତି । "Where'er I roam what ever realms to see . My heart untravelled fondly turns to thee"

ଏପରି ଅଜସ୍ର ଦୃଷ୍ଟାନ୍ତ ଓଡିଆ ସାହିତ୍ୟରୁ ଗ୍ରହଣ କରାଯାଇପାରେ ଯାହାର ଧ୍ୟେୟ ବସ୍ତୁ ଭିନ୍ନ ହେଲେ ମଧ୍ୟ ସୃଷ୍ଟି କୌଶଳ ପ୍ରଧାନପାଟର ଅନ୍ତରଙ୍ଗ ଚିତ୍ର ଦ୍ୱାରା ପ୍ରଭାବିତ । ବାମଣ୍ଡାର କବି ଏବଂ ସାହିତ୍ୟିକଙ୍କ ବ୍ୟତିରେକେ ବାମଣ୍ଡା ଆଗତ ଅନ୍ୟାନ୍ୟ ସାହିତ୍ୟିକଙ୍କ-ରଚନାରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ପ୍ରଧାନପାଟର ନିଗୂଢ ଅନୁପ୍ରେରଣା ସୂଚିତ ହୋଇଥାଏ ।

(ଖ) ପ୍ରଧାନ ପାଟ:ଏକ ସାରସ୍ୱତ ସର୍ବେକ୍ଷଣ ।

ପ୍ରଧାନପାଟର ପରିବ୍ୟାପ୍ତ ସୌନ୍ଦର୍ଯ୍ୟର ଦରବାରରେ ଏକାଭୂତ ହୋଇଛି ଅନେକ ଚେତନା ଅନେକ କାବ୍ୟ ଧାରା। ଏ କ୍ଷେତ୍ରକୁ ଆକର୍ଷିତ ହୋଇ ଆସିଛନ୍ତି ଭାରତର ବିଭିନ୍ନ ପ୍ରାନ୍ତରୁ ପଣ୍ଡିତ,ସଂସ୍କାରକ,କବି ଓ ସାହିତ୍ୟିକ । ସମସ୍ତେ ମୁଗ୍ଧ ଚକିତ ଦୃଷ୍ଟିରେ ପ୍ରଧାନପାଟକୁ ନିଜ ପ୍ରଣତି ଶାଶ୍ୱତ ପଂକ୍ତି ଭେଟି ଦେଇଛନ୍ତି । ଅନେକ ସଂସ୍କୃତାନୁରାଗୀ ପଣ୍ଡିତ ଆସିଛନ୍ତି । ଆନନ୍ଦ ଦାମୋଦର ଚଂପୂ ରଚକ ଭୁବନେଶ୍ୱର ବଡପଣ୍ଡା ଆହ୍ଲାଦିତ ହୋଇ ଉଦ୍‌ଘୋଷଣା କରିଛନ୍ତି ।

"ଅଥ ବାମଣ୍ଡା ରାଜଧାନ୍ୟାଂଦେବଦୁର୍ଗ ନାମ୍ନିନଗରେ ପ୍ରଧାନ ପଟାଭିଧାନ
ଶୈଳନିଃସରନ୍ନହ ନିର୍ଝର ତରଙ୍ଗ ସେକ ସୁକୁମାରାୟାଂରସାଯାମ ଶୋକ......"

ଆସିଛନ୍ତି ନୀଳକଣ୍ଠ କବିଭୂଷଣ,ବ୍ରଜବଂଧୁ ମିଶ୍ର,ମଧୁସୂଦନ ତର୍କବାଚସ୍ପତି,ଭାଗିରଥି ରଥ,ସୁଦର୍ଶନ ନ୍ୟାୟରନ୍ତ,ବାଚାଓଝା ଭାରତ ମାର୍ତ୍ତଣ୍ଡ ଶିବକୁମାର ଶାସ୍ତ୍ରୀ, ଶ୍ରୀକର ଶାସ୍ତ୍ରୀ । ଏ ପଣ୍ଡିତ ମଣ୍ଡଳୀଙ୍କ ଗୁରୁ ଗଂଭୀର ଶ୍ଳୋକ ଉଚ୍ଚାରଣ ସହିତ ତାଳମିଳାଇ ପ୍ରଧାନପାଟର କଳନାଦ ଶିହରୀ ଉଠିଥିଲା ।

ଆଧୁନିକ କବିତାର ବଳିଷ୍ଠ କାବ୍ୟ ପୁରୁଷଙ୍କ ଧ୍ୱନିରେ ବି ଆମୋଦିତ ହୋଇ ଉଠିଥିଲା ପ୍ରଧାନପାଟ । ଆସିଥିଲେ ରାଧାନାଥ,ମଧୁସୂଦନ,ଫକୀର ମୋହନ,ଗଙ୍ଗାଧର,ଚିନ୍ତାମଣି,ବିଶ୍ୱନାଥ କର,ଗୌରୀଶଙ୍କର,ନନ୍ଦକିଶୋର,ରାମକୃଷ୍ଣ ସାହୁ,ଭୋଳାନାଥ ସାମନ୍ତରାୟ ପ୍ରମୁଖ କବିଗଣ । ପ୍ରଧାନପାଟର ସନ୍ଦର୍ଶନରେ ଆହ୍ଲାଦିତ ହୋଇ ରାଧାନାଥ ପରବର୍ତ୍ତୀ ଯୁଗୀୟ କାବ୍ୟକାର ମଧ୍ୟ ଆକର୍ଷିତ ହୋଇଛନ୍ତି । ଆସିଛନ୍ତି କାଳିନ୍ଦୀ ପାଣିଗ୍ରାହୀ,ମାନସିଂ,ବିନୋଦ ନାୟକ,ରାଧାମୋହନ କୁଞ୍ଜ ବିହାରୀ,ହରେକୃଷ୍ଣ ମହତାବ,ପବିତ୍ର ପ୍ରଧାନପ୍ରମୁଖ ।

ସର୍ବୋପରି ପ୍ରଧାନପାଟକୁ ନେଇ ଏକ ସର୍ବକାଳିକ କାବ୍ୟ ଚେତନା ସଂଜାବିତ ହୋଇଛି । କେବଳ କାବ୍ୟଚେତନା ନୁହେଁ ସବୁ ଧର୍ମ ଧାରାର ପବିତ୍ର ମିଳନ ଘଟିଛି ଏ କ୍ଷେତ୍ରରେ। ସନାତନ,ହିନ୍ଦୁ,ମୁସଲମାନ,ବ୍ରାହ୍ମ,ଖ୍ରୀଷ୍ଟିଆନ ପ୍ରତିଟି ଧର୍ମର ଅନନ୍ୟ ପୁରୁଷଗଣ ଏଠିପଦାର୍ପଣ କରି ପ୍ରଧାନପାଟକୁ ନିଜର ଭକ୍ତି ନୈବେଦ୍ୟ ପ୍ରଦର୍ଶନ କରିଛନ୍ତି ।

ପ୍ରକୃତିକୁ ନେଇ କାବ୍ୟ ରଚନାର ପରଂପରା ଓଡିଆ କବିତାରେ ମୁଖ୍ୟତଃ ରାଧାନାଥଙ୍କ ଠାରୁ ଆରମ୍ଭ ହେଲା । ରାଧାନାଥ ଥିଲେ ଓଡିଶା ପ୍ରକୃତିର ପ୍ରଧାନ ପ୍ରଶଂସକ । ପରବର୍ତ୍ତୀ ପର୍ଯ୍ୟାୟରେ ଗଙ୍ଗାଧର, ସଚ୍ଚିଦାନନ୍ଦ, ନନ୍ଦକିଶୋର ପ୍ରମୁଖଙ୍କ କବିତାରେ ପ୍ରକୃତିର ସାର୍ବଭୌମ ରୂପ ଉର୍ଜସ୍ୱଳ ହୋଇଉଠିଲା । ଏ ପ୍ରସଙ୍ଗରେ ପ୍ରଧାନପାଟ ପ୍ରତିଟି କବିଙ୍କୁ କାବ୍ୟ ରସଦ ଯୋଗାଇବାରେ କାର୍ପଣ୍ୟ କରିନାହିଁ । ବରଂ କବି ପ୍ରାଣରେ ପ୍ରଧାନପାଟ ପ୍ରତି ଏକ ମହାଇଶ୍ୱରୀୟ ଭାବ ଜାଗ୍ରତ ହୋଇଛି । ପ୍ରତିଟି କବି ପ୍ରଧାନପାଟ ଅନ୍ତରାଳରେ ପ୍ରକୃତିର ବନ୍ଦାପନା କରିଛନ୍ତି । ପ୍ରଧାନପାଟ ସବୁଗୋଷ୍ଠୀର ସବୁ ଚେତନାର କବିଙ୍କ କାବ୍ୟ ପରିପୁଷ୍ଟିରେ ସହାୟକ ହୋଇଛି । ତଥାପି ପ୍ରଧାନ ପାଟ ଭାବ ଆବେଦନ ଭିତରେ ଦୁଇଟି କବିଗୋଷ୍ଠୀଙ୍କ କବିତା ବାମଣ୍ଡାର ସାରସ୍ୱତ ସ୍ୱୀକୃତି ଲଭିଛି । ପ୍ରଥମତଃ ପଣ୍ଡିତ ଭୁବନେଶ୍ୱର ବଡପଣ୍ଡାଙ୍କ ନେତୃତ୍ୱରେ ଓଡିଶାର ସମଗ୍ର ପଣ୍ଡିତ ମଣ୍ଡଳୀଙ୍କ ସଂସ୍କୃତ କାବ୍ୟ ଓ କାବ୍ୟାଲୋଚନା ଏବଂ ଦ୍ୱିତୀୟତଃ ରାଧାନାଥୀ ଶିବିରର କବିବୃନ୍ଦଙ୍କ ଆଧୁନିକ କାବ୍ୟ କବିତା । ବାମଣ୍ଡାର କବିବୃନ୍ଦ ନିଜର ଇଚ୍ଛାମୁତାବକ କିଏ ରାୟକବିଙ୍କ ଶିବିରକୁ ଶକ୍ତିଶାଳୀ କରିବାକୁ ଆଗେଇ ଗଲାବେଳେ ; କିଏ ଭଞ୍ଜୀୟ କାବ୍ୟ କଳାର ପରିପୁଷ୍ଟିରେ ଉତ୍ସର୍ଗୀକୃତ । ତଥାପି "ବିଜୁଳି" ପତ୍ରିକା ଏ କ୍ଷେତ୍ରରୁ ପ୍ରକାଶ ଲଭିଛି ଆଧୁନିକ କବିତାର ପ୍ରତିଷ୍ଠା କଳ୍ପେ । ଅନେକ କବି ବିଜୁଳିକୁ ଆଶ୍ରୟ କରି ଭଞ୍ଜୀୟ କାବ୍ୟ କଳାର କାବ୍ୟ ଦୋଷ ନିରୂପଣ କରିବାରେ ବ୍ୟସ୍ତ ଥିଲା ବେଳେ,କାଳୀ ଚରଣ ଦ୍ୱିବେଦୀ,ବ୍ରଜବଂଧୁ ମିଶ୍ର ପ୍ରମୁଖ ରସଲିପ୍ସୁ ବିଦ୍ୱାନଗଣ ଭଞ୍ଜ କାବ୍ୟରେଥିବା ଉତ୍କର୍ଷତାକୁ ମଧ୍ୟ ପାଠକଙ୍କୁ ସୂଚାଇବାରେ ଅବହେଳା କରିନାହାନ୍ତି ।

ଏମିତି ଏକ କାବ୍ୟଧାରାର ସଂକଟମୟ ମୁହୂର୍ତ୍ତରେ ପ୍ରଧାନପାଟ ତାର ରାଗିଣୀର ଧାରା ପରିବର୍ତ୍ତନ

କରିନାହିଁ । ତାର କଳନାଦରେ ଶାଶ୍ୱତ ପଂକ୍ତିକୁ ଧରିବାର ପ୍ରଚେଷ୍ଟା ଅବ୍ୟାହତ ରଖିଛି । ବାମଣ୍ଡାର କାବ୍ୟ ପ୍ରାଣ ରାଜା ସୁଚଳଦେବ ଇନ୍ଦ୍ରଧନୁ ବିଜୁଳି କଳିରେ ଦେଖାଇଛନ୍ତି ଶ୍ୱେତ ପତାକା ସତ୍ୟର ଶାନ୍ତିର । ପ୍ରତ୍ୟକ୍ଷରେ ରାଧାନାଥ ସାହିତ୍ୟ ପ୍ରତିଷ୍ଠାପାଇଁ ସେ ଚାହୁଁଥିଲେ ମଧ୍ୟ ଅବଚେତନରେ ପ୍ରାଚୀନର ଜୟଧ୍ୱନିଥିଲା । ତାଙ୍କ କାବ୍ୟ କବିତାର ପ୍ରାଣ ଆଧୁନିକ ଥିଲେ ମଧ୍ୟ ଅଙ୍ଗଥିଲା ଚାନ ଧାରାର ବାର୍ତ୍ତାବହ । ଏକ ଦ୍ୱୈତଧାରାର ପ୍ରତିଷ୍ଠା ହୋଇଥିଲା ଏ କ୍ଷେତ୍ରରେ । ପ୍ରାଚୀନ ହେଉ ବା ଆଧୁନିକ ସତ୍ ସାହିତ୍ୟର ପୃଷ୍ଠପୋଷକ ଥିଲା ବାମଣ୍ଡା । ପ୍ରଧାନପାଟ ଥିଲା ତାର ନିରପେକ୍ଷ ପ୍ରତିଭୂ ।

(ଗ) କବି ଦୃଷ୍ଟିରେ ପ୍ରଧାନ ପାଟ :

ପ୍ରଧାନପାଟକୁ ନେଇ ବିଭିନ୍ନ ସମୟରେ କବିଗଣ କବିତା ରଚନା କରିଛନ୍ତି ।ଏକ ବଳିଷ୍ଠ ସାରସ୍ୱତଧାରା ପ୍ରଧାନପାଟକୁ କେନ୍ଦ୍ରକରି ଶତାବ୍ଦୀ ଧରି ଗଢି ଉଠିଛି । ଏ ଆଲୋଚନାରେ ଦାମୋଦର ମିଶ୍ରଙ୍କ (୧୮୮୮) ପ୍ରଧାନପାଟ କବିତା ଠାରୁ ସାମ୍ପ୍ରତିକ ଯୁଗର କବିତା ପର୍ଯ୍ୟନ୍ତ କବିତାକୁ ଆଲୋଚନା ପରିସରଭୁକ୍ତ କରାଯାଇଛି । ଏତଦ୍ ବ୍ୟତୀତ ୧୮୮୮ ପୂର୍ବରୁ ବିଭିନ୍ନ ପତ୍ରିକାରେ ପ୍ରଧାନପାଟ ସମ୍ପର୍କରେ ରଚନା ଦେଖାଯାଏ । ୧୮୮୬ ରେ ରାଧାନାଥ ପ୍ରଥମେ ବାମଣ୍ଡା ଭ୍ରମଣରେ ଆସନ୍ତି । ତାଙ୍କର ଭ୍ରମଣ ବିବରଣୀ "ଭ୍ରମଣ କାରୀର ପତ୍ର"ରୂପେ ନବ ସଂବାଦରେ ୧୮୮୭ ରେ ପ୍ରକାଶ ଲଭେ । ଏ'ପତ୍ରରେ ସେ ପ୍ରଧାନପାଟର ଶୋଭାକୁ ଅପାର୍ଥିବ ଦୃଶ୍ୟ ରୂପେ ବର୍ଣ୍ଣନା କରିଛନ୍ତି କେବଳ ସେତିକି ନୁହେଁ ରାଧାନାଥଙ୍କ ପ୍ରତିଟି କାବ୍ୟ କବିତାରେ ପ୍ରଧାନପାଟର ମହାନତା ସହିତ ବାମଣ୍ଡାର ସାରସ୍ୱତ ପରଂପରାର ଜୟଗାନ କରାଯାଇଛି । ରାଧାନାଥଙ୍କ ସୁଯୋଗ୍ୟ ପୁତ୍ର ଶଶିଭୂଷଣ ମଧ୍ୟ ବାମଣ୍ଡାକୁ ବାରବାଂର ଆଗମନ କରି ପ୍ରଧାନପାଟର ସୌନ୍ଦର୍ଯ୍ୟ ଅବଗାହନ କରିଛନ୍ତି । "ଉତ୍କଳ ପ୍ରକୃତି"ପୁସ୍ତକରେ ସ୍ଥାନିତ "ବସନ୍ତ ନିବାସରେ ସନ୍ଧ୍ୟା"ତାଙ୍କର ପ୍ରଶଂସା ମୁଗ୍ଧ ପ୍ରାଣର କାବ୍ୟିକ ଆବେଦନକୁ ଗଦ୍ୟାତ୍ମକ ଶୈଳୀରେ ପରିବେଷଣ କରିଛି । ତାଙ୍କରି ଭାଷାରେ " ଶୈଳ ସୁନ୍ଦରୀଙ୍କ ଅଙ୍କଗତ ଆନନ୍ଦ ନିକେତନ" "ବସନ୍ତ ନିବାସ" ର ପ୍ରଥମ ସନ୍ଦର୍ଶନରେ ବାସ୍ତବିକ ଶରୀର ରୋମାଞ୍ଚିତ ଏବଂ ହୃଦୟ ଓ ମନ ଅପୂର୍ବ ଆନନ୍ଦରେ ପରିପୂର୍ଣ୍ଣ ହୋଇ ଉଠିବା ବିଚିତ୍ର ନୁହେଁ । *** ଶ୍ୱେତ କୃଷ୍ଣ ପ୍ରସ୍ତର ରଞ୍ଜିତ ହର୍ମ୍ୟତଳ ଏବଂ ବିଦ୍ୟୁତାଲୋକରେ ଭୂଷିତ ହୋଇ ମନୁଷ୍ୟ ହସ୍ତର କିର୍ତ୍ତି -ପରାକାଷ୍ଠା ସୂଚିତ କରୁଥିଲେ ହେଁ ପର୍ବତ୍ୟ ଶ୍ରେଣୀୟ ଗାଢ ନୀଳିମା ମଧ୍ୟରେ ଶ୍ୱେତପଦ୍ମ ପ୍ରାୟ ଏହା ଦୂରରୁ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଛି । ପ୍ରଧାନପାଟ ପ୍ରପାତର ଜଳଧାରା ଅଦୂରରେ ନିରନ୍ତର ମନ୍ଦ୍ରନାଦରେ ଉପରରୁ ଖସିବା ଦୃଶ୍ୟ ଏହାସହିତ ମିଳିତ ହେବାର ଦୃଶ୍ୟ ସମନ୍ୱୟରେ ଅଦ୍ୱିତୀୟ ହୋଇଅଛି, ଏହା ବୋଲିବା ବାହୁଲ୍ୟ ମାତ୍ର । "

ବିଶ୍ୱନାଥ କର ଗଡଜାତ ଭ୍ରମଣରେ ଯାଇ ତା ୦୩-୦୬-୧୮୯୫ ଦିନ ବାମଣ୍ଡାର ସାରସ୍ୱତସେବୀଙ୍କ ଗହଣରେ ପ୍ରଧାନ ପାଟ ଦର୍ଶନକରି ମୁଗ୍ଧ ହୁଅନ୍ତି । ସଂବଲପୁର ହିତୈଷିଣୀ ପୃଷ୍ଠାରେ " ଭ୍ରମଣ ବୃତାନ୍ତ" ଶୀର୍ଷକରେ ପ୍ରଧାନପାଟର ମହାନତାକୁ ସେ କଳାତ୍ମକ ଭାବରେ ବର୍ଣ୍ଣନା କରିଛନ୍ତି ।

ଯିଏ ଦେବଗଡ ଆସିଛି ପ୍ରଧାନପାଟ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଛି ।ତେଣୁତ ପ୍ରଧାନପାଟକୁ କେନ୍ଦ୍ରକରି ଗଢିଉଠିଛି ଏକ ସାରସତ୍ୱ ପରମ୍ପରା । ଜୀବନର ପ୍ରତିଟି ସ୍ୱପ୍ନ,ଜ୍ୱାଳା ଓ ଯଂତ୍ରଣା, ଅତୀତର ଐତିହ୍ୟବୋଧ ଏବଂ ଭବିଷ୍ୟତର ସୁନୀଳ ଆକାଂକ୍ଷା ପ୍ରଧାନପାଟ ଅନ୍ତରାଳରେ ରୂପ ପାଇଛି । ୧୮୮୭ରେ କ୍ରାନ୍ତଦ୍ରଷ୍ଟା କବି ରାଧାନାଥ ଭବିଷ୍ୟତର ସୂକ୍ଷ୍ମ ଚିତ୍ରଟିଏ ନନ୍ଦିକେଶ୍ୱରୀ କାବ୍ୟରେ ପରିବେଷଣ କରିଛନ୍ତି ।

"ପ୍ରଧାନପାଟର ପ୍ରପାତ ଭୀଷଣ<br>
ନିର୍ଜନ ଗହନେ ଗର୍ଜେ ଅନୁକ୍ଷଣ<br>
*** **** ****<br>
ରଚିବେ ଯାତାରେ ରୁଚିର ନବର<br>
ଦୂର ଭବିଷ୍ୟତେ ତୋର ବଂଶଧର । (ନନ୍ଦିକେଶ୍ୱରୀ )

ଏ ବକ୍ତବ୍ୟ ୧୯୦୯ରେ ସତ୍ୟ ପ୍ରମାଣିତ ହୁଏ ଯେତେବେଳେ ପ୍ରଧାନପାଟ ତୀରରେ ସଚ୍ଚିଦାନନ୍ଦ ଦେବ 'ବସନ୍ତ ନିବାସ' ନିର୍ମାଣ କରନ୍ତି ।

ସୁଚଳଦେବଙ୍କ ପୃଷ୍ଠପୋଷକତାରେ ଓଡିଆ ସାହିତ୍ୟର ପରିପୁଷ୍ଟି ଏବଂ ଦେବଦୁର୍ଗ ତୀର୍ଥ ସାରସ୍ୱତର ମର୍ଯ୍ୟାଦା ଲଭିବା କଥା 'ମହାଯାତ୍ରା'ରେ କବି ସ୍ୱୀକାର କରିଛନ୍ତି । ସାରସ୍ୱତ ଧାରାରେ ବାମଣ୍ଡାର ନରପତିଙ୍କୁ ପ୍ରକୃତିର ଅନବଦ୍ୟ ଦାନ ପ୍ରଧାନପାଟ ସହିତ କବି ସଂପର୍କିତ କରିଛନ୍ତି କାବ୍ୟ ସମ୍ମାନରେ -

ଦିବ୍ୟ ଅବଧାନେ ଆସୁ ଏ ଗୀତ ଚୁମ୍ବର ।

ହେ ରାଜେନ୍ଦ୍ର ମାଦ୍ରନାଦି ପ୍ରପାତେରପତି
ବାମଣ୍ଡା ମଣ୍ଡଳେଶ୍ୱର, ଉତ୍କଳ ମଣ୍ଡନ :
ତୁମ୍ଭ ଶୁଭ ଆବିର୍ଭାବେ ହୋଇଛି ଉତ୍କଳେ
ଦେବଦୁର୍ଗ, ଦେବ ଏବେ ତୀର୍ଥ ସାରସ୍ୱତ ।   (ମହାଯାତ୍ରା-ଷଷ୍ଠସର୍ଗ )

କଳ୍ପବ୍ୟାପୀ ତପସ୍ୟାରେ ଆତ୍ମଲୀନ ପ୍ରଧାନପାଟର ତପସ୍ୱୀ ବେଶକୁ ଅନୁଭବିଥିଲେ ଋଷି କବି ମଧୁ ରାଓ । ଭୂମାମୟ ଅନନ୍ତ ପ୍ରେମର ଲଳିତ ବିଭୂତି ପ୍ରଚାର କରିବାରେ ପ୍ରଧାନ ପାଟ ସଫଳ ହୋଇଛି । ଊର୍ଦ୍ଧ୍ୱମୁଖୀ ତାର ମହାପ୍ରବାହ ପବିତ୍ର ପ୍ରଣବର ଝଙ୍କାର ତୋଳେ । କବିଙ୍କ ଭାଷାରେ -

" ବହୁ ବର୍ଷ ପରେ ଆଜି ଏ ନୟନ ଦେଖିଲା ଆବର
କୈଦନ୍ତା ପର୍ବତ ପ୍ରସ୍ଥେ ତପୋମୂର୍ତ୍ତି ପ୍ରଧାନପାଟର ।
କି ଭୂମା ତପସ୍ୟା ବ୍ରତେ କି ଅସୀମ ଆତ୍ମ- ବିସର୍ଜନେ
ସେ ମହା ପ୍ରପାତ ରତ କଳ୍ପବ୍ୟାପୀ ସଂକଳ୍ପ ସାଧନେ ।
ସଞ୍ଚିତ ଅନନ୍ତ ତପୋରାଶି ପ୍ରାୟେ ତାର ବାରିରାଶି
ଢାଳି ଦେଉଅଛି ପ୍ରେମେଧରାତଳେ ସେ ମହା ସନ୍ନ୍ୟାସୀ ।"(ବାମଣ୍ଡା-ରାଜ-ପ୍ରଶସ୍ତି)

ପ୍ରଧାନପାଟର ନେତ୍ର ପ୍ରୀତିକର ରୂପ ସ୍ୱଭାବ କବି ଗଙ୍ଗାଧରଙ୍କ ଭାବମୟ ହୃଦୟକୁ ଆକୃଷ୍ଟ କରିଛି ।

"ଆହାସେ ପ୍ରଧାନପାଟ ନେତ୍ର ପ୍ରୀତିକର
ଭାବୁକର ଭାବମୟ ହୃଦୟ ରଞ୍ଜନ
ଗିରିଶିର ବିଭୂଷିତ ଶୁଭ୍ର ସ୍ୱଚ୍ଛଝର
ଆତପ ତାପିତ ତନୁ ତାପ ବିଭଞ୍ଜନ ।"

ପ୍ରଧାନପାଟ ସନ୍ଦର୍ଶନରେ ବିମୁଗ୍ଧ କବି ଦାମୋଦର ମିଶ୍ର ନିଜ ଜୀବନର ପ୍ରଥମ କବିତା ୧୮୮୮ରେ ପ୍ରଧାନପାଟକୁ ଶୀର୍ଷକ କରି ରଚନା କରନ୍ତି । ଏହା ସଂବଲପୁର ହିତୈଷିଣୀରେ ପ୍ରକାଶ ଲଭେ । ପରବର୍ତ୍ତୀ ପର୍ଯ୍ୟାୟରେ ୧୮୯୪ ଖ୍ରୀଷ୍ଟ ରେ ଏ କବିତାର ପରିବର୍ଦ୍ଧି ରୂପ ସେହି ପତ୍ରିକାରେ ପ୍ରକାଶିତ ହୁଏ । " ନଟବାଣୀ' ଛନ୍ଦରେ ରଚିତ ଏ କାବ୍ୟ ସେହିବର୍ଷ ପୁସ୍ତକାକାରେ ହିତୈଷିଣୀ ପ୍ରେସରେ ମୁଦ୍ରିତ ହୁଏ । ଏ କବିତାରେ କବି ପ୍ରଧାନପାଟର ପ୍ରାକୃତିକ ସୌନ୍ଦର୍ଯ୍ୟ ସହିତ ବାମଣ୍ଡାର ଗଙ୍ଗବଂଶୀ ଆଦି ରାଜା ଠାରୁ ସୁଡ଼ଳଦେବଙ୍କ ସ୍ମୃତି ଆଲୋଚନା ବାମଣ୍ଡାର ସାରସ୍ୱତ ପରମ୍ପରାର ବିଶଦ୍ ବିବରଣୀ ପ୍ରଦାନ କରିଛନ୍ତି । ଏ କବିତାର ସୃଷ୍ଟି କୌଶଳ କିଛିକାଂଶରେ ଚିଲିକା କାବ୍ୟଦ୍ୱାରା ପ୍ରଭାବିତ । ଏ କବିତା ମାଧ୍ୟମରେ ସେ ଶିଖରାବଳୟ ବେଷ୍ଟିତ ଦେବଗଡ଼ର ପ୍ରାକୃତିକ ଚିତ୍ର,ପ୍ରନ୍ ସମ୍ପଦ, ମନ୍ଦିର ମାଳାର ପ୍ରଦକ୍ଷିଣ କରିଛନ୍ତି । ଏ କବିତା ସେ ସମୟରେ ଅନେକ ସୁଧୀ ସାହିତ୍ୟକଙ୍କ ସପ୍ରଶଂସ ଦୃଷ୍ଟି ଆକର୍ଷଣ କରିଥିଲା । ନୀଳମଣି ବିଦ୍ୟାରନ୍ ରାଧାନାଥ,ଚନ୍ଦ୍ର ମୋହନ ମହାରଣା, ବିଶ୍ୱନାଥ କର, ଭୋଳାନାଥ ସାମନ୍ତରାୟ, ଚିନ୍ତାମଣି ମହାନ୍ତି ପ୍ରମୁଖ କାବ୍ୟ ପ୍ରେମୀ ଏହାର ଭୂୟସୀ ପ୍ରଶଂସା କରିଛନ୍ତି । କବିଶେଖର ଚିନ୍ତାମଣିଙ୍କ ବକ୍ତବ୍ୟ ଏଠି ସ୍ମରଣ ଯୋଗ୍ୟ. ।" ଶ୍ରୀଯୁକ୍ତ ଦାମୋଦର ମିଶ୍ରଙ୍କର ବିବରଣୀ "ପ୍ରଧାନପାଟ "ରଚନା ପାଠକରି ମୁଁ ନିରତିଶୟ ଆନନ୍ଦ ସହକାରେ ଅନ୍ତରର ସହିତ କବିଙ୍କୁ ଶତଶତ ଧନ୍ୟବାଦ ପ୍ରଦାନ କରୁଅଛି । ଏପରି ରଚନା ଥରେ ଦୁଇଥର ପାଠକଲେ ମନତୃପ୍ତି ହୁଏ ନାହିଁ । ଏହା ସତତ ମନକୁ ଚୁମ୍ବକବତ ଆକର୍ଷଣ କରିବ । *** କବିଏକ ଦିଗରେ ଯେରୂପଶବ୍ଦ ବିନ୍ୟାସ ଦ୍ୱାରା ରଚନା ଉତ୍କର୍ଷ ରକ୍ଷାକରି ଅଛନ୍ତି ଅନ୍ୟଦିଗରେ ସେହିପରି କବିତାର ଭାଷା ରକ୍ଷା ଏବଂ ଉତ୍କର୍ଷ ଭାଷାର ଜୀବନ ରକ୍ଷା କରିବାରେ ଅଣୁ ମାତ୍ର ତ୍ରୁଟି କରି ନାହାନ୍ତି ।

ରାଧାନାଥ ଯୁଗୀୟ ଜଣେ ପ୍ରଖ୍ୟାତଯଶା କବି ରୂପରେ ଦାମୋଦର ମିଶ୍ର ପରିଚିତ । ନିଜର ଅଜସ୍ର କାବ୍ୟରଚନାକୁ ସେ ମାତୃପୂଜା କଳ୍ପେ ଉର୍ତ୍ସର୍ଗୀ ଯାଇଛନ୍ତି । ଅଥଚ ଆଧୁନିକ ସାହିତ୍ୟ ସମାଲୋଚକଗଣ ତାଙ୍କୁ ପ୍ରକୃଷ୍ଟ ସମ୍ମାନ ପ୍ରଦାନ କରିବାରେ ଅବହେଳା ପ୍ରଦର୍ଶନ କରିଛନ୍ତି । କବି ପ୍ରକୃତିର ସାବଲୀଳ ସୁରୁଚିପୂର୍ଣ୍ଣ ରୂପକୁ ପ୍ରଧାନ ପାଟ ମଧ୍ୟଦେଇ ପ୍ରକାଶ କରିଛନ୍ତି । -

" ଧନ୍ୟତୁ ପ୍ରଧାନପାଟ ନିର୍ଝରିଣୀ
ପଞ୍ଚଖଣ୍ଡା ଗିରି ସାମନ୍ତ ରୂପିଣୀ
****                    ****
ଶାନ୍ତି ଭୂୟ ବେନି ଦାନୀ ତୋହପରି

ଦେଖିନାହିଁ କାହିଁ ନୟନ ମୋହରି
ତୁ ଅଟୁ ବାମଣ୍ଡା ସୁଷମା ଭଣ୍ଡାର
ବିଶାଳ ଉତ୍କଳ ଶାନ୍ତି ଲୀଳାଗାର।

ପ୍ରଧାନପାଟ ଦେବୀ ଦେବଗଡ଼ର ଗ୍ରାମ ଦେବୀ ତାଙ୍କରି ନାମାନୁସାରେ ପ୍ରପାତର ନାମକରଣ।ଚୈତ୍ର ମାସରେ ପ୍ରତି ମଙ୍ଗଳବାର ଏ ଦେବୀଙ୍କ ପୂଜାହୁଏ।ଚୈତ୍ର ପୂର୍ଣ୍ଣିମାରେ ମହାସମାରୋହରେ ମେଳା ହୁଏ। ବର୍ତ୍ତମାନ ଏ ପରମ୍ପରା ସୁଚାରୁ ଭାବେ ସୁରକ୍ଷିତ ହୋଇପାରୁ ନାହିଁ।

ମନୁଷ୍ୟ ଚିରଦିନ ପ୍ରକୃତିର ସ୍ନେହରେ ଲାଳିତ ପାଳିତ। ପ୍ରକୃତିର ଅଫୁରନ୍ତ ଗନ୍ତାଘରକୁ ନିଜ ସ୍ୱାର୍ଥ ପାଇଁ ବିନିଯୋଗ କଲାବେଳେ ପ୍ରାଚୀନ ମାନବ ପ୍ରକୃତିର ସ୍ୱୀକୃତି ଯାଚଞ୍ଚା କରୁଥିଲା। ପୂଜା ନୈବେଦ୍ୟର ପରାକାଷ୍ଠାରେ ପ୍ରକୃତିକୁ ସନ୍ତୁଷ୍ଟକରି କାଠ, ବାଉଁଶ, ମହୁ,ଲାଖ,ଝୁଣା ପ୍ରଭୃତି ସଂଗ୍ରହ କରୁଥିଲା। ସେ ସମୟର ମଣିଷ ଅକୃତଜ୍ଞ ନଥିଲା। ବରଂ ସେ ପ୍ରକୃତିକୁ ସଂଭ୍ରମତାର ଦୃଷ୍ଟିରେ ସମ୍ମାନ ଦେବା ଶିଖିଥିଲା। ଏମିତି ଏକ ପୃଷ୍ଠଭୂମିରେ ପ୍ରକୃତି ପୂଜାର ପରମ୍ପରା ଆର୍ଯ୍ୟମାନଙ୍କଦ୍ୱାରା ସୁରକ୍ଷିତ। ପ୍ରଧାନ ପାଟ ଜଙ୍ଗଲରୁ କାଠ ସଂଗ୍ରହ କରିବାକୁ ଯାଇ ପ୍ରପାତର ପଶ୍ଚିମ ଦିଗରେ "କାଠଗଡାଣି" ଦେବୀଙ୍କୁ ପ୍ରତିଷ୍ଠା କରାଯାଇଥିଲା। ଏ ଦେବୀଙ୍କୁ ସଂନ୍ତୁଷ୍ଟ କରି ଲୋକମାନେ ପର୍ବତ ଶିଖରରୁ ନିର୍ବିଘ୍ନରେ କାଠ ଗଡାଇ ଆଣୁଥିଲେ।

ପ୍ରପାତର ପାଦ ଦେଶରେ ପଞ୍ଚଖଣ୍ଡୀ ଦେବୀଙ୍କର ଅଧିଷ୍ଠାନ। ଏ ସମସ୍ତ ପାରମ୍ପରିକ ବିଧିର ବୈଜ୍ଞାନିକ ଦୃଷ୍ଟିକୋଣ ଯାହା ଥାଉନା କାହିଁକି ପରିବେଶ ସୁରକ୍ଷିତ ହୋଇରହିଥିଲା। ନିଜବ୍ୟବହାର ଅତିରିକ୍ତ ଲୋକେ ଜଙ୍ଗଲକୁ ଯଥେଚ୍ଛାଚାର ବ୍ୟବହାର କରୁନଥିଲେ।

ପ୍ରଧାନପାଟ ପ୍ରପାତର ନିମ୍ନ ଭୂମିରେ ବାସୁଦେବ ସୁଢଳ ଦେବଙ୍କ ନିର୍ମିତ ପ୍ରକାଣ୍ଡ ସୁରମ୍ୟ ଉଦ୍ୟାନ ଅବସ୍ଥିତ। ଏହା ବଡବଗିଚା ନାମରେ ଖ୍ୟାତ। ଏ ଉଦ୍ୟାନ ଅନେକ ସୁଦୃଶ୍ୟ ମୂର୍ତ୍ତି ସହିତ ବିଭିନ୍ନ ଫୁଲ ଫଳରେ ଶୋଭିତ। ଭାରତୀୟ ବାଙ୍ମୟରେ ରଣ ଚାଣ୍ଡିନୀ ରୂପେ ଖ୍ୟାତ ଲକ୍ଷ୍ମୀ ବାଇଙ୍କ ମୂର୍ତ୍ତି ଏ ଉଦ୍ୟାନରେ କଳାତ୍ମକ ଭାବେ ପ୍ରଦର୍ଶିତ। ଅତୀତର ପୁଷ୍କଳ ସାକ୍ଷ୍ୟ ପ୍ରଦାନ ପାଇଁ ଏବେ ଏ ଉଦ୍ୟାନର କଙ୍କାଳ ମାତ୍ର ବିଦ୍ୟମାନ।

ବାସୁଦେବଙ୍କ ପୂର୍ବବର୍ତ୍ତୀ ରାଜା ବ୍ରଜସୁନ୍ଦରଙ୍କ ସମୟରେ ପ୍ରଧାନ ପାଟ ପାଦ ଦେଶରେ ଗିରି ଗୋବର୍ଦ୍ଧନ ମନ୍ଦିର ନିର୍ମିତ ହୋଇଥିଲା। ମନ୍ଦିର, ଉଦ୍ୟାନ,ବସନ୍ତ ନିବାସ ସହିତ ସର୍ପ ଏବଂ ବ୍ୟାଘ୍ର ଆକୃତିର ଚୂନ ପଥର ନିର୍ମିତ ମୂର୍ତ୍ତିରେ ପ୍ରଧାନପାଟ ନିଜର ସୁନ୍ଦର ପସରା ମେଲିଧରିଥିଲା। ଏ ସୌନ୍ଦର୍ଯ୍ୟ ଅବଗାହନକରି ପ୍ରତିଯୁଗରେ କବି ଆତ୍ମହରା ହୋଇଛି। କବି ନିଳକଣ୍ଠ କବିଭୂଷଣ ଶିବତାଣ୍ଡବ ବୃତ୍ତରେ ଏହାର ଜୟଗାନ କରିଛନ୍ତି।

"ପ୍ରଧାନପାଟ ନିର୍ଝରୀ — ବିଭିନ୍ନ କନ୍ଦରୋଦରୀ
ବିଲୋଳ ବୀଚି ଚାତୁରୀ — ନଗାଙ୍କ କେଳି କତୁରୀ
ଅନନ୍ତ ମାର୍ଗ ସଂଚରୀ — ବିଭର୍ତ୍ତି ଜୀବନେଶ୍ୱରୀ।"

କବିପ୍ରାଣ ପ୍ରଧାନପାଟର ଅନନ୍ତ ରାଜ୍ୟରେ ଜୀବନର ଶ୍ରେୟ ଶାନ୍ତିନିକେତନ ଖୋଜିଛି।

"କାହାର ଆଦେଶେ — ଶାନ୍ତି ସୁଧା ବିତରଣ
କରି ପ୍ରାଣୀଙ୍କର କରୁ — ମାନସ ହରଣ
କହହେ ପ୍ରପାତ ମୋର — ଅଥୟ ଜୀବନ
କାହିଁ ଗଲେ ଲଭିବି ମୁଁ — ଶାନ୍ତି ନିକେତନ।"

(ପ୍ରଧାନ ପାଟ ପ୍ରପାତ ପ୍ରତି- ରାଜୀବଲୋଚନ ଦେବ)

ପଲ୍ଲୀଚେତନାର ଅପୂର୍ବ ରୂପକାର ଲୋକରନ୍ କୁଞ୍ଜବିହାରୀ ଦାଶ ପ୍ରଧାନପାଟ ଅନ୍ତରାଳରେ ଗ୍ରାମ୍ୟ ସୌନ୍ଦର୍ଯ୍ୟ ର ସରଳ ଦ୍ୟୋତନା ଅନୁଭବ କରନ୍ତି।

ଝର ଝର ଝର ବନ ମର ମର କାକଳି ମୁଖର ମଧୁର ସଂଜ
ରଙ୍ଗ ରଚ ରଚ ଶଇଳ ସମନ୍ତ ଦିଶେ ଶିରିମନ୍ତ ମଉଳେ କଂଜ
ମଧୁର ରୂପଶ୍ରୀ ଗୋଧୂଳୀ ରୂପସି ହସଇ ବିକଶି ଶଇଳ ପରେ
ରୂପ ଅପରୂପ ଜଳେ ଦପ ଦପ ଝରେ ଥପଥପ ମାନସ ହରେ
ଆସି ଏ ପ୍ରବାସେ ବସନ୍ତ ନିବାସେ ଦର ଦରହାସେ ରହିଛି ଚାହିଁ;
କରି କରି ନାଚ ପରଧାନ ପାଟ ଜଳପରପାଟ ଆସଇ ଧାଇଁ।

କବିପାଇଁ ପ୍ରଧାନପାଟର ରୂପ ପସରା। ବାମଣ୍ଡାର କବିତ୍ୱ ଗୌରବର ଅବସାନ ସହିତ ପ୍ରଧାନପାଟର

ଗୃପପୂଜା ବ୍ୟାହତ ହେବା କଥା ଦରଦୀ କବି କୃଷଚନ୍ଦ୍ର କର ଅଶ୍ରୁଳ ଆବେଗରେ ପ୍ରକାଶ କରନ୍ତି ।

"ଛବିଳ ଉତ୍କଳର ଛବିର ହାଟ
ପ୍ରକୃତି -ପ୍ରିୟସଖି ପ୍ରଧାନପାଟ
କବି ନୟନ ଶିରୀ ଗିରା ତନୁଜା
କବି ବିହୁନେ ଆଜି କାହିଁ ତୋ ପୂଜା ଗୋ ।"

ପ୍ରଧାନପାଟର ବହୁମୁଖୀ ସୌନ୍ଦର୍ଯ୍ୟ ବିଭିନ୍ନ ପ୍ରେକ୍ଷାପଟରେ କବି ମାନସକୁ ଆକର୍ଷିତ କରିଛି । ଜଡଚେତନା ଠାରୁ ବାସ୍ତବ ଦାବୀ ଚେତନା ଯାଏ ପ୍ରତିଟି କବିଙ୍କ ଚେତନ ଭୂମିକୁ ସ୍ପର୍ଶ କରିବାରେ ସେ କ୍ଷମ ହୋଇଛି । ତେଣୁ କବି ପ୍ରଶ୍ନିଳ ଦୃଷ୍ଟିରେ ଚାହାନ୍ତି ପ୍ରଧାନପାଟକୁ ।

କି ମହାନ ଶିକ୍ଷା ଦେଉ ଦର୍ଶକ ମନରେ
ବିହରିବାକୁ ଇଛନ୍ତି ତୋର ରମ୍ୟ ତୀରେ
ଭୁଲିଯାଇ ସଂସାରର ଯାବତ କଷଣ
ନିର୍ମାଣି ତୋହର ତୀରେ ରମ୍ୟ ନିକେତନ ।(ଗିରିଧାରୀ ନନ୍ଦ)

ପଦ୍ମଚରଣଙ୍କ ଧଉଳିପାହାଡ ପରି ପ୍ରଧାନପାଟ ମଧ୍ୟ ବାମଣ୍ଡାର ଅତୀତ ଗୌରବର ମୂକସାକ୍ଷୀ । କବି ପ୍ରଧାନପାଟକୁ ଇଙ୍ଗିତକରି ଉଖାରୀ ଦେଇଛନ୍ତି ସେହି ପୁଷ୍କଳ ସାରସ୍ୱତ ପରଂପରାକୁ ।

ପ୍ରଧାନ ପ୍ରପାତ ରହିଛି ମଉନେ
କହବାରେ ଫେଡି ଅତୀତ କଥା
ଅତୀତ କାଳରେ ଶୁଣିଅଛ କେତେ
ବାମଣ୍ଡା ମହିମା ଗୌରବ ଗାଥା । ( ରାମଚନ୍ଦ୍ର ବ୍ରହ୍ମା )

ବାମଣ୍ଡା ଓଡିଆ ସାହିତ୍ୟର ସେହି ସ୍ମରଣୀୟ କ୍ଷେତ୍ର ଯେଉଁଠି ସଂଘଟିତ ହୋଇଥିଲା ପ୍ରାଚୀନ ଓ ଆଧୁନିକ କାବ୍ୟଯୁଗର ନିର୍ଣ୍ଣାୟକ ସଂଘର୍ଷ । ଏଇଠି "ସଂବଲପୁର ହିତୈଷିଣୀ" ଓ " ବିଜୁଳି"ର ଆବିର୍ଭାବ ସହିତ ରାଧାନାଥ ସାହିତ୍ୟ ପ୍ରତିଷ୍ଠାର ସୂର୍ଯ୍ୟୋଦୟ ଘଟିଥିଲା ।ଏ କ୍ଷେତ୍ର ଦେଇଥିଲା ରାଧାନାଥଙ୍କୁ କବିବରର ସ୍ୱୀକୃତି ।

'ପ୍ରକୃତି ପୁରୋଧା କବିଗୁରୁ ରାଧାନାଥ '
ମୁଗ୍ଧ ହେଲେ ଚାହିଁ ତୋର ଭୀମକାନ୍ତ ଶିରୀ
ତୋପଧ୍ୱନି ସଙ୍ଗେ ତୋଳି ମନ୍ଦ୍ର ପ୍ରତିଧ୍ୱନି
ଗାଇଲୁ ବନ୍ଦନା ଗୀତି କବିବର କରା' (ଦୁର୍ଗା ପ୍ରସାଦ ଦ୍ୱିବେଦୀ)

ପ୍ରଧାନପାଟ ରାଧାନାଥଙ୍କ ଉପାଧିରେ କେବଳ ସନ୍ତୁଷ୍ଟ ନୁହେଁ ସେ ଦେଢ ସତାର ପରିଚାୟ କା ମହାକାଳର ଅନୁଗାମିନି ସେ କବିର ପ୍ରିୟ କବିତାର ମଧ୍ୟ ପ୍ରିୟା ଭଞ୍ଜ ରାଧାନାଥ କଳିରେ ସେ ନିଜର ନିର୍ଣ୍ଣାୟକ ମତ ସାବ୍ୟସ୍ତ କରିଛନ୍ତି ।

"ସାରସ୍ୱତ ଅଗଣାରେ
କବିତାର ବାଦ ବିସଂବାଦ
ରାଧାନାଥ ଗଙ୍ଗାଧର ଅବା
ଭଞ୍ଜୀୟ ସଂଗୀତ
ତୁ ଦେଇଛୁ ସାକ୍ଷ୍ୟତୋର
ଗାଇଅଛୁ ମହାକାଳ ଜୟ
ତୁ ନୋହୁ ସୁ ପ୍ରାଚୀନ
ଅବା ଆଧୁନିକ
ତୁ ଅଟୁ ଆତ୍ମା ପରି କାଳହୀନ
ପୁଣି ମୃତ୍ୟୁଞ୍ଜୟ ।"(ଫଣୀନ୍ଦ୍ର ଭୂଷଣ ନନ୍ଦ)

ଏକ ବୁନିୟାଦି କବିତାର ଉର୍ଦ୍ଧସ୍ୱଳ ଧାରା ସହିତ ନିଜର କଳନାଦକୁ ଉତ୍ସର୍ଗୀ ଦେଇଛି ପ୍ରଧାନ ପାଟ ।

ସାଂପ୍ରତିକ ଅସହାୟବୋଧ ସହିତ ତାରି ଜୀବନଯାତ୍ରା ମଧ୍ୟ କ୍ଷୀଣ । ବିଷାକ୍ତ ପରିବେଶର ପ୍ରଦୂଷିତ ଅବହାଓ୍ୱା ଦ୍ୱାରା ସତ୍ୟ-ଶିବ-ସୁନ୍ଦରର ବାଣୀ ମଧ୍ୟ ଆକ୍ରାନ୍ତ । ଧ୍ୱସ୍ତବିଧ୍ୱସ୍ତ ଅରଣ୍ୟାନୀର ସବୁଜିମା । ପ୍ରକୃତିର ସୁକୋମଳ ଅଙ୍ଗ ଧୂସରିତ । ତେଣୁ ପ୍ରପାତର ପବିତ୍ର ଜାହ୍ନବୀ ଧାରାକୁ ଆଧୁନିକ କବିର ଦୃଷ୍ଟି ଅସହାୟ ମଣିଷର ଲୁହଧାରା ରୂପେ ପ୍ରତିକୀତ କରିଛି ।

ଦେଖେ ଯେବେ ତୋର ରୂପ,
ଗଡିଆସୁଥିବା ଦୁଇଟିଧାରକୁ
ଲାଗେ ମୋତେ ଯେହ୍ନେ ତୁହି ବେନି ଅଶ୍ରୁଧାର
ମୋ ନୟନ କୋଣରେ ।" (ଯୁଗଳ କିଶୋର ମିଶ୍ର)

ଅସହାୟ ମଣିଷର ଜୀବନଚର୍ଯ୍ୟା ହେଉ ବା ପୁଷ୍କଳ ଐତିହ୍ୟର ସ୍ମୃତିଚାରଣ ହେଉ ସବୁଠି କବି ପ୍ରାଣର ମଧୁ ଚନ୍ଦ୍ରିକା ରୂପେ ପ୍ରଧାନପାଟ ସମ୍ମାନିତ । ସୌନ୍ଦର୍ଯ୍ୟବାଦୀ କବି ନିଜ ପ୍ରାଣର ଅକପଟ ସମ୍ମାନ ଜଣାଏ -

"ହେ ପ୍ରଧାନପାଟ !
ପ୍ରକୃତିର ଆଲେଖ୍ୟ ମନ୍ଦିର
କବି କଳ୍ପନାର ହେ ମଧୁ ଚନ୍ଦ୍ରିକା
ସୀମନ୍ତର ହେ ଉଜ୍ଜଳ ରେଖା ।
***   ***   ***
ସବୁତ ଦେଖିଛ ତୁମେ ସବୁତ ଶୁଣିଛ
ପ୍ରତିଧ୍ୱନି ଛଳେ କହ ଏବେ ବାରେ
ଗହ୍ୱର ଗର୍ଭରୁ
ଜୀବନତ ନୁହେଁ ସତ୍ୟ
ଲୋଳ ବିନ୍ଦୁ ଚପଳ କେବଳ
ସତ୍ୟ ଏକା ଶିବମୟ ଶାଶ୍ୱତ ସୁନ୍ଦର" (ମଧୁସୂଦନ ଗୁରୁ)

ପ୍ରଧାନପାଟକୁ ନେଇ କବିତାର ଏ ଘୋଷଯାତ୍ରା ଯୁଗ ଯୁଗ ଧରି ଏମିତି ଚାଲିଥାଉ । ସତ୍ୟର ଜୟ ହେଉ । କଳାର ଜୟ ହେଉ । ପ୍ରକୃତିର ଶୁଚିଶୁଭ୍ର ଅଧିଷ୍ଠାନ ସହିତ ଶବ୍ଦ କଳାର ମହାସ୍ନାନ ଅଭିଷେକ ହେଉ ।

"ହେ ପ୍ରଧାନପାଟ
ସତ୍ୟର ପ୍ରିୟ ତୁହି
ଶାଶ୍ୱତର ପ୍ରିୟ
କବିର ପ୍ରିୟ ତୁହି
କବିତାର ପ୍ରିୟ
ଅଶାନ୍ତ ଦୁର୍ନିର୍ବାର ଜୀବନରେ
ମମତାର ସବୁଜ ବିଗ୍ରହ
ତୋ'ଅସ୍ପଷ୍ଟ ଗୁଞ୍ଜନରେ
ଗାଇ ଯା'ଜଗତର ଜୟ"

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ ।
ଦେବଗଡ

# ପ୍ରଧାନ ପାଟ

ଦାମୋଦର ମିଶ୍ର

( ନଟବାଣୀ ଛନ୍ଦରେ )

ଧନ୍ୟରୁ ପ୍ରଧାନ ପାଟ ନିର୍ଝରିଣୀ
ପଞ୍ଚଖଣ୍ଡୀ ଗିରି ସିମନ୍ତ ରୂପିଣୀ ।
କି ବର୍ଣ୍ଣିବି ତୋର ମହିମା ଅପାର
ଅପାର ଯେସନ ବଙ୍ଗ ଅକୁପାର ।
ସଦାକରି ଦେବୀ ଶ୍ରୀ ପଦେ ପ୍ରଣତି
ସଦାଗତି ସମ ସଦା କରୁ ଗତି ।
ସର୍ପ ପରି ତୋର କୁଟିଳ ଗମନ
ଦମ୍ଭୋଳୀ ପରାୟେ ଭୀଷଣ ଗର୍ଜନ ।
ଶାନ୍ତି ଭୟ ବେନି ଦାନୀ ତୋହ ପରି
ଦେଖି ନାହିଁ କାହିଁ ନୟନ ମୋହରି ।
ତୁ ଅଟୁ ବାମଣ୍ଡା ସୁଷମା ଭଣ୍ଡାର
ବିଶାଳ ଉତ୍କଳ ଶାନ୍ତି ଲୀଳାଗାର ।
ନବଘନ ଜିଣା ତୋର ଚାରୁଅଙ୍ଗ
ଚପଳା ଲାଞ୍ଛିତ ବିମଳ ତରଙ୍ଗ ।
ଖେଳି ହେଉଥାନ୍ତି ପାଷାଣେ କଚାଡି
ଦେଖି ଦ୍ରଷ୍ଟାନେତ୍ର ନ ପାରେ ପିଛାଡି ।
କାହିଁ ଅବା ସୂକ୍ଷ୍ମ କାହିଁ ବା ବିସ୍ତାର
ତୋର ଗତି ରଙ୍ଗ ବିବିଧ ପ୍ରକାର ।
କାହିଁ ତୋର ସ୍ରୋତ ପାଷାଣ ଧକ୍କାରେ
ଖସୁଥାଏ ଚାରୁ ମଲ୍ଲିମାଳାକାରେ ।
ସୂର୍ଯ୍ୟମୁଖେ ଶିରେ ରଚି ଇନ୍ଦ୍ରଧନୁ
ଦଣ୍ଡକେ ସନ୍ତାପ ହରୁ ଦ୍ରଷ୍ଟା ମନୁ ।
ତା ଦେଖିଣ ଭରଦ୍ୱାଜ ପକ୍ଷୀ ରାଶି
ଖଣ୍ଡିଉଡା ଦେଇ ତୋର ପାଶେ ଆସି ।
ପୁରନ୍ତି ଦେଖାଇ ଚିତ୍ର କଳେବର
କହ ନିର୍ଝରିଣୀ କେ ବେଶୀ ସୁନ୍ଦର ।
ମତ୍ସ୍ୟରଙ୍କା ମତ୍ସ୍ୟ ଲଭିବା ନିମନ୍ତେ
ଆସେ ତୋର ପାଶେ ଚିନ୍ତି ଅନ୍ତର୍ଗତେ ।
କିନ୍ତୁ ଶୁଣି ତୋର ବିକଟ ଗର୍ଜନ
ବିଷର୍ଣ୍ଣ ମାନସେ ପଳାଏ ବହନ ।
ପାଳିତ ପ୍ରାଣୀରେ କେଡେ ଅନୁରାଗ
ଦେଖି ପରିପନ୍ଥି ଆଗେ ରୋଧୁ ମାର୍ଗ ।
ଘୋର ଅନାଚାରୀ ଟାଙ୍ଗିବାହୀ କନ୍ଧେ
ପିଶୁନ ସ୍ୱଭାବେ ମାତି ମହାଦ୍ୱନ୍ଦେ ।

ତାର ଗଙ୍ଗ ବଂଶେ ହୋଇ ପ୍ରତିବାଦୀ
ଲଭୁଥିଲେ ଯେବେ ଜୀବନ୍ତ ସମାଧି ।
ଦେଖିଣ ତାଙ୍କର ନୃଶଂସ ବ୍ୟାପାର
ତୋ ତୀର କନ୍ଦରେ ରାଜ ପରିବାର ।
ଶିରେ ବହି ନାନା କଳ୍ପନା-ପସରା
ସ୍ୱଜନ ଚିନ୍ତାରେ ହୁଅନ୍ତି କାତରା ।
କରନ୍ତି ସେ ଯେବେ ତୋ ନିକଟେ ବାସ
ଦିଅ ଶାନ୍ତି ବାରି ଶ୍ରମ କରୁ ନାଶ ।
ଖଟାଇ ସମୀରେ ଯଥା ପରିକର
ମୁଗ୍ଧ ଦଃଖୀ କଳା ପୋଛୁ ଶାଗ୍ରତର ।
ମଜ୍ଜାଇ ଶ୍ରୀଅଙ୍ଗ ସ୍ନାନକଲା ଛଳେ
ପୁତ କରୁଥିଲେ ତୋ ନିର୍ମଳ ଜଳେ ।
ଶମନ-ଦମନ-ଶୀଳ ଅସ୍ତ୍ର କରେ
ରକ୍ଷୀ ବର୍ଗ କ୍ରୀଡା ଶୈଳ ଶୃଙ୍ଗ ପରେ ।
ଥରେ ତୋତେ ଥରେ ଶତ୍ରୁ ଦିଗେ ଚାହିଁ
ଦେଉଥାନ୍ତି କର କୃପାଣ କଂପାଇ ।
ପ୍ରବେଶନ୍ତେ ଶତ୍ରୁ ସେନା ତୋର ଘାଟେ
ଗର୍ଜ୍ଜି କହୁଥାଉ ଭୀଷଣ କୁହାଟେ ।
"ନ ଆସି ଏ ଦିଗେ ଫେରରେ ବହନ
ନୁହଇ ଏ ତୁମ୍ଭ ଶୁଭ ଆଗମନ ।
ଆସିଅଛ ମୋତେ ବୈରି ନିର୍ଯ୍ୟାତନେ
ଘେନି ଜୀବନକି ଫେରିଯିବ ଜଣେ ?
ସଙ୍ଗିନୀ ମୋହର ଦେବୀ ଶୃଙ୍ଗେଶ୍ୱରୀ
ରଣକ୍ଷେତ୍ରେ କରେ କରବାଳ ଧରି ।
ବିଳସି ରଚିବେ ଯୁଦ୍ଧ ଘୋରତର
ନ ରହିବ କନ୍ଧେ ମସ୍ତକ ତୁମ୍ଭର ।"
ଧନ୍ୟ ନିର୍ଝରିଣୀ ପ୍ରତାପ ତୋହରି
ଶତ୍ରୁପକ୍ଷେ ତୁହି ମହା ଭୟଙ୍କରୀ ।
ଭାବୁକର ଭାବ ଉର୍ମି ନିସ୍ତାରିଣି
ସନ୍ତାପୀ ମାନବ ଶାନ୍ତି ବିଧାୟିନୀ ।
ଭୃଙ୍ଗୁ ଭୃଗୁ ଦେହେ କରି ତୁ ବିଳାସ
ଜନ୍ମାଉ ଭାବୁକ ମନେ କି ଉଲ୍ଲାସ ।
ଡାକୁଛୁ ବିକଟ ନିଃସ୍ୱନେ କୁହାଟି

"ବିଷୟି ! ବିଷୟ-ଜାଇ ଶାଗ୍ରକାଟି !
ଆସ ଆସ ସୁଖେ ବସ ମୋର କୋଳେ
ପୂଜ ବିଶ୍ୱପତି ଶ୍ରୀପଦ ନିରୋଳେ !"
ଭାବ-ଉର୍ମି-ଦୋଳା ଉପରେ ଭାବୁକ
ବସି ଦେଖୁଥାଏ ତୋର କଉତୁକ ।
କଉତୁକେ ଲତା-ସୂତ୍ରେ ଗୁନ୍ଥିହାର
ଦିଅନ୍ତି ପାଦପେ ପ୍ରେମ ଉପହାର ।
ଶାନ୍ତମୂର୍ତ୍ତି ତୋର ଦେଖି ଦ୍ରୁମାବଳୀ
ଦେଉଥାନ୍ତି ଚାରୁ ବନ୍ୟ ପୁଷ୍ପାଞ୍ଜଳି,
ଦେଖି ଉଗ୍ର ରୂପ ବ୍ୟଗ୍ରହୋଇ ସର୍ବେ
ଚନ୍ଦୁଚେ ତୋ ପଦେ ନମନ୍ତି ନୀରବେ ।
ଯେଣୁ ତୁହି ବନଲକ୍ଷ୍ମୀ ସହଚରୀ
ତେଣୁ ଗୋ ହିତଦେ ! ହିତର୍ଥେ ତୋହରି ।
ପଲ୍ଲବ ଶୋଭନା ପଳାସ ଲତିକା
ଶ୍ୟାମଙ୍ଗୀ-ତମାଳ, ଚାରୁ ମାଧବିକା ।
ମଂଜୁଳ -ବଂଜୁଳ, ଶାଳୀୟ ବ୍ରତତୀ
ସୁଗନ୍ଧ-କୁସୁମ-ଭୂଷଣା ମାଳତୀ ।
ହର-ହୃଦେଶ୍ୱରୀ- ଶୋକ ନାଶକରୀ
ଭୁବନ ବିମୋହା-ଅଶୋକ ମଞ୍ଜରୀ ।
ଗୋଟି ଖଡିକାର ସଙ୍ଗତେ ନିଆଳୀ
ସୌରଭ ଯୌବନେ ଦେଇଥାନ୍ତି ଢାଳି ।
ସେହି ଲତାବଳୀ ଶାଳ,ସୁରଶାଳ
ଅସନ,ଶିଂଶପା,କରଞ୍ଜ,ପିଆଳ ।
ଲୋଧ୍ର,ଅତଣ୍ଡିର ଦେହେ ହୋଇ ଛନ୍ଦି
ତିଗ୍ମାଂଶୁର ଅଂଶୁ କରିଛନ୍ତି ବନ୍ଦୀ ।
ତୋହପାଇଁ ସିନା ଦେବୀ ଶୃଙ୍ଗେଶ୍ୱରୀ
ଲତା ଚନ୍ଦ୍ରାତପ ରଚିଲେ ସୁନ୍ଦରୀ ।
କେତେ କୁଞ୍ଜଗୃହ କେତେ ଲତା ଦୋଳା
ତୀରେ ତୀରେ ତୋର ଅଛି ହୋଇ ତୋଳା ।
ବନଦେବୀ ଯହିଁ ବସି ନିକାଞ୍ଚନେ
ଦେଖନ୍ତି ତୋ ଶୋଭା ସମ୍ଭାର ସୁମନେ ।
ଶୁଣି ତୋ ମଧୁର ଶବ୍ଦ ଝର ଝର
ବଜାନ୍ତି ସ୍ୱର୍ଗୀୟ ବୀଣା ମନୋହର ।
ଶୁଣି ବୀଣା ସ୍ୱର ପୋଷାଚିତ୍ର ପାଦା
ତରୁ ଚୂଡେ ଦୂରୁଁ ବୋଲେ ରାଧା ରାଧା ।
କୁହୁ କୁହୁ ହୋଇ କୋକିଳ କାକଳୀ
ମୁହୂର୍ତ୍ତେ ପୁରାଏ ଘନ ବନସ୍ଥଳୀ ।
କି ଗୀତ ଗାଉ ତୁ ନୁହେଁ ମତେ ଜଣା
ତଥାପି ଶ୍ରବଣେ ଶ୍ରବଣ ଉନ୍ମନା ।
ଉପହାସକରି ତୋ ଚାରୁ ତରଙ୍ଗ
ଶିର ଢାଳି ନୁହେଁ କହଇ ଭୁଜଙ୍ଗ ।
କିନ୍ତୁ ଶୁଣି ତୋର ଗୀତ ମନୋହର
ପିଉଥାଏ ବାୟୁ ସଙ୍ଗେ ନିରନ୍ତର ।
ଶୃଙ୍ଗକଣ୍ଡୂୟନ ଛଳେ କୃଷ୍ଣସାର
ଉତ୍କର୍ଣ୍ଣେ ଉଭାରି ପ୍ରିୟା ସଙ୍ଗେ ତାର ।
ଛାଡି ତୃଣାହାର ହୋଇଣ ସ୍ତମ୍ଭିତ
ଶୁଣୁଥାଏ ତୋର ସୁମଧୁର ଗୀତ ।
ସମ୍ବୀକରେ ତୋର ତୀରରେ ଶମ୍ବର
ଛନ୍ଦି ମଞ୍ଜରୀରେ ଶୃଙ୍ଗ ଦୀର୍ଘତର ।
ତୋ ସଙ୍ଗୀତ ସୁଧା ପିଏ ମୁଖ ତୋଳି
ମତହୋଇ କେତେ ଝୁଲିଝୁଲି ଦୋଳି ।
ମହାକୌତୁକରେ ଭ୍ରମି କପିକୁଳ
ଖାଇ ତୋଳିତୋଳି ଫଳ ପତ୍ର ଫୁଲ ।
ତୋ ଗୀତେ କୌତୁକେ ହୋଇ ମତଭର
ହୁଙ୍କାରେ ଦେଖାନ୍ତି ନୃତ୍ୟ ମନୋହର ।
ମୟୂର ମୟୂରୀ ଚିତ୍ର କଣ୍ଠ ଶୁକେ
ଭ୍ରମୁଥାନ୍ତି ତୋର ତୀରେ କଉତୁକେ ।
ତୋର ତୋୟରାଶି ଆହା କି ନିର୍ମଳ
ସ୍ୱଚ୍ଛ ପୂତ ଯଥା ମନ୍ଦାକିନୀ ଜଳ ।
ହୀରକର ସମ କାନ୍ତି ଶୁଭ୍ରତର
କି ଅବା ରଜତ ପ୍ରବାହ ସୁନ୍ଦର ।
ତ୍ରିଦିଗେ ପାଷାଣ ବିସ୍ତାରିଣ କାୟା
ଦେଖୁଛନ୍ତି ରହି ତୋ ମୋହନ ମାୟା ।
ଦେଖିବାକୁ ତୋର ବିଗ୍ରହ ଲାବଣ୍ୟ
ଆସୁଥାନ୍ତି ବ୍ୟୋମୁଁ ନୀଳ ନବଘନ ।
ଯେ ଦେଖିଛି ଥରେ ତୋ ରୂପ ମୋହନ
ପ୍ରାଣଥିଲେ ସେ କି ହେବ ବିସ୍ମରଣ ।
ବିଶାଳ ପାଷାଣ ଶୋଭେ ସ୍ତରେ ସ୍ତରେ
ବସାଉ ବସନେ ଯହିଁ ସମାଦରେ ।
ଯେ ତୋତେ ଦେଖିଛି ତୀରେ ବସି ଦଣ୍ଡେ

ତାର ନେତ୍ର ସିନା ନେତ୍ର ଏ ଭୂଖଣ୍ଡେ ।
ଏହିପରି ତୋର ରୂପ ଦରଶନେ
ବିରୂପାକ୍ଷ ମହା ମହିମା କଥନେ ।
ବଳୁଥାଏ ବେଳୁ ବେଳ ମୋ ଆଗ୍ରହ
ଭାଙ୍ଗୁଥାଏ ସିନା ଭାରତୀ ନିଗ୍ରହ ।
ଦିନେ ତୋ ଦର୍ଶନେ ଆସି ଆନନ୍ଦରେ
ବିପଥ ହେଲି ଏ ପର୍ବତ କନ୍ଦରେ ।
ଗିରି କନ୍ଦରାର ଅନ୍ଧାର ଭୀଷଣ
ଜନ୍ମାଇଲା ଚିତେ ଭୟ କ୍ଷଣାକ୍ଷଣେ ।
ତରୁ ଲତା ପୁଞ୍ଜେ ବିଷମ ଗହଳ
ବ୍ୟର୍ଥ ଯହିଁ ମତ୍ତ ଦ୍ୱିରଦ କୌଶଳ ।
ତିଳେ ପଦଚ୍ୟୁତ ହୋଇଲେ ଯେ ବନେ
କଣ୍ଟକିତ ପଦ ହୋଇବ ବହନେ ।
ଝିଲିଝିଙ୍କାରିତ ଶୁଣାଏ ଗହନ
ଯଥା ବନଦେବୀ ନୂପୁର ନିକ୍ୱଣ ।
ସେ ବନେ ହୋଇ ମୁଁ ଅନନ୍ୟ ଉପାୟ
ଭ୍ରମିଲି ସଶଙ୍କେ ହୋଇ ନିଃସହାୟ ।
କରି ମାତ୍ର ଶାଖା କର ସଂଚାଳନ
ସୂଚୁଥିଲେ ମାର୍ଗ ଧରାରୁହଗଣ ।
ବିଶାଳ ଲତିକା ଧରି ଧୀରେ ଧୀରେ
ପ୍ରବେଶିଲି ଯାଇ ପଞ୍ଚଖଣ୍ଡୀ ଶିରେ ।
ଧନୁ ଦେହେ ଶର ସନ୍ଧାନ ପରାଏ
ଶ୍ରମେ ମୋର କଟୀ ନଇଁ ପଡୁଥାଏ ।
ବିହଙ୍ଗ-ଭାସ୍କର ସ୍ତବ ସୁଲଳିତ
ହରିକେଷ୍ଟ ମୋର ତୋଷୁଥିଲା ଚିତ୍ତ ।
ଶୁଭିଲା ଏ କାଳେ ଝରଝର ସ୍ୱନ
ବିଶ୍ୱ ବନ୍ଦ୍ୟ ବିଶ୍ୱ ସଙ୍ଗୀତ ଯେସନ ।
ଗଣି ଗଣି ପଦ ତୋର ଦରଶନେ
ପ୍ରବେଶିଲି ବଟ ନିକଟେ ବହନେ ।
କି ଶୋଭା ପାଦପ ପତ୍ର ଫଳ ଘେନି
ଖଞ୍ଜାକି ମର୍କତ ପଦ୍ମରାଗ ବେନି ।
ଲମ୍ବିଛି ଓହୋଳ ପାଦ ଯାଏ ମୋର
ଯୋଗୀ ଶିରେ ଯଥା ଦୀର୍ଘ ଜଟା ଭାର ।
ଦେଖିଲି ତା ପାଶେ ପାଷାଣ ପ୍ରାଚୀର
ଲତା ଗୁଳ୍ମାକୀର୍ଣ୍ଣ ଅଟେ ଯାଶରୀର ।

ଦେବ ଶିଳ୍ପୀ ହସ୍ତେ ଅଟେ ଯା ନିର୍ମିତ
ମହୀ ମଧ୍ୟେ ତାକୁ କିବା ଉପମିତ ।
ମଧ୍ୟେ ସମାସୀନା ଦେବୀ ଶୁଙ୍ଗେଶ୍ୱରୀ
ଶ୍ରୀ ପଦେ ପନିକି ପଟା ମାଡି ଧରି ।
ଲୋଳଜିହ୍ୱା ହୋଇ ବିଜୟ ଭବାନୀ
ହିମାଦ୍ରୀ ତନୁଜା ବିଶ୍ୱ ଠାକୁରାଣୀ ।
ଅବନୀ ଗରଭୁ ବାହାରିଣ ମାତ
କ୍ରମେ ହୋଇଛନ୍ତି ସକଳେ ବିଖ୍ୟାତ ।
ତହିଁକି ଅପୂର୍ବ ଦୃଶ୍ୟଗଲା ଦେଖା
ତୋର ସୁବିମଳ କାନ୍ତି ଶୁଭ୍ର-ରେଖା ।
ଦେବୀ ପାଦ ଧୋଇ ହୁଏ ନିର୍ଗମନ
ଶ୍ରୀହରି କରୁଣା ନିର୍ଝର ଯେସନ ।
ବେନି ପାଶେ ଗିରି ମଧ୍ୟେ ତୋର ଲୀଳା
ଲହରୀ ମାଳିକା ମଣ୍ଡନା ଛଇଳା ।
କ୍ଷୁଦ୍ରକାଷ୍ଠ ପରେ ଚଢିଣ ଉରଗ
ଲଙ୍ଘିଯାଇଥାନ୍ତି ତରଙ୍ଗୁ ତରଙ୍ଗ ।
ଭବିତବ୍ୟ ଭିତି ନାହିଁ ତାର ମନେ
ନଥାଏ ସେ ଚିନ୍ତା ଖଳର ଯେସନେ ।
ଦୁରନ୍ତ ମାନବେ ଦେଖି ସନ୍ଥ ଜନ
ଭୟାକୁଳେ ମାର୍ଗ ତେଜନ୍ତି ଯେସନ ।
ଦେଖି ସର୍ପ ତଥା ଦୁର୍ଦ୍ଦୁର ସକଳେ
ତୋତେ ଆଶ୍ରା କରି ବୁଡିଯାନ୍ତି ଜଳେ ।
ଅଟଇ ମହତ ସହାୟ ଯାହାର
ଛାର ଦୁଷ୍ଟ କିବା କରି ପାରେ ତାର ।
ଗଣ୍ଡାକ୍ଷନ କୁଳ ଦୂରୁଁ ସର୍ପେ ଦେଖି
ତୀକ୍ଷ୍ଣ ଦନ୍ତେ କାଟି ଘେନି ଯାଏ ଟେକି ।
ଏହି ପରି ସିନା ଦୁରନ୍ତ ମାନବ
ଦୁଷ୍ଟ ହାତେ ଲଭେ ଯୋଗ୍ୟ ପରାଭବ ।
ଶାନ୍ତ ଭାବେ ବନ ହିଂସ୍ର ଜନ୍ତୁ ଗଣ
କରୁଛନ୍ତି ଦିବାରାତ୍ର ବିଚରଣ ।
ତୋ ପାଶେ ଉଦ୍ଦାମ ପ୍ରକୃତି ଯେ ପ୍ରାଣୀ
ଉଦ୍ଦଣ୍ଡେ ତୁ ଦଣ୍ଡ ଦେଉ ତାକୁ ଜାଣି ।
ତୋ ନିକଟ ଏକ ପାର୍ଶ୍ୱ ଗିରି ଶିରେ
ବସିଲି କୌତୁକେ ଗମି ତହିଁ ଧୀରେ ।
ଦେଖିଲି ବାମଣ୍ଡା ରାଜଧାନୀ ଶୋଭା

ଯା ଛବି ଦର୍ଶନେ ଜନ ମନୋଲୋଭା ।
ଦ୍ୱିତଳ ସୁରମ୍ୟ ହର୍ମ୍ମ୍ୟମାଳା ତହିଁ
କ୍ଷୁଦ୍ର ଖଡି ଶୈଳ ପରାୟେ ଦିଶଇ ।
ଦୁର୍ଗ ମଧ୍ୟେ ମଧ୍ୟେ ଚାରୁ ସରୋବର
କମଳ କୁମୁଦେ ନେତ୍ର ପ୍ରୀତିକର ।
ଶୋଭେ ଚର୍ତୁର୍ଦ୍ଦିଗେ ଶ୍ୟାମଳ କେଦାର
ପ୍ରକୃତି ନିଳିମା ଶାଟି ପରକାର ।
ଅଗ୍ରେ ଶୋଭା ପାଏ ବିଦ୍ୟା ନିକେତନ
ବାଗ୍ଦେବୀଙ୍କ ବିଦ୍ୟାଭଣ୍ଡାର ଯେସନ ।
ଶ୍ରୀ ସଚ୍ଚିଦାନନ୍ଦ ଦେବ ନୃପାତ୍ମଜ
ଯେ ରାଜ ତନୁଜେ ଅଟନ୍ତି ଅଗ୍ରଜ ।
ସରସ୍ୱତୀ ପାଦପଦ୍ମ ଆରାଧନା
କରିବାକୁ ଯେବେ ବଳିଲା ବାସନା ।
ଶିକ୍ଷା ଲାଭ କରି ସେହି ବିଦ୍ୟା ବାସେ
ପରିଶେଷେ ପୁଣି ଆସିଲେ ତୋ ପାଶେ ।
ଦୁର୍ଗାଙ୍କର ମାୟା ଶବରୁଣୀ(୧)ବେଶ
ତୋ ସହାୟେ ତୋର ପାଶେ କଲେ ଶେଷ ।
ତାହାରି ନିକଟେ ଆସି ମାସେ ମାସେ
ଭ୍ରମନ୍ତିମୃଗୟୁ ବେଶେ ମହୋଲ୍ଲାସେ ।
କୌଶଳେ ଯେ ବୀର ମହାବାଳ ବାଘ
ମାରନ୍ତି ଦଣ୍ଡକେ ମାରେ ଯଥା ଛାଗ ।
ତୋ ତୀର ଶଇଳେ ହର୍ଷେ ହୋଇ ଠିଆ
ଦେଖି ସୁଖୀ ତୁଙ୍ଗ ଶୃଙ୍ଗ ସିନ୍ଦୁରିୟା(୨) ।
ନିଶୀଥେ ଯାଗିରେ ହୁଏ ସଂକୀର୍ତ୍ତନ
ପ୍ରଭୁଝାଡେଶ୍ୱର (୩) ବୃନ୍ଦାସ କାନନ ।
ବଡଯୋର(୪)ଯହିଁ ଝର୍ଝର ଶବଦେ
ବନ୍ଦେ ଚନ୍ଦ୍ରମୌଳୀ ସଲୀଳ ସଂପଦେ ।
ତୋପାସୁ ଦେଖିଲି ହର୍ଷେ ସତୀଘାଟ(୫)
ନାନାଲତା ଗୁଳ୍ମେ ରୁଦ୍ଧ ଯାର ବାଟ ।
ଗଙ୍ଗ ବଂଶ ନାରୀ ଗୌରବର ଚିତ୍ର
ଦିଶଇ ଇଷ୍ଟକା ବାସୁଁ କି ବିଚିତ୍ର ।
ତୋର ଗିରି ପାଦେ ହୋଇଣ ପ୍ରଧାନ
ଦିଶୁଛି ସୁଚଳ ବିଳାସ ଉଦ୍ୟାନ(୬) ।
ପୁତ-ଗଙ୍ଗବଂଶ-ନିଷ୍କଳଙ୍କ ରବି
ବାମଣ୍ଡେଶ ବାସୁଦେବ ରାଜକବି ।
ତୋର କୃପାବର୍ଷୁ ରଚି ଉପବନ
ଘେନନ୍ତି ପ୍ରଭାତ ସନ୍ଧ୍ୟା ସମୀରଣ ।
ଶରୀର ରକ୍ଷକ ସଙ୍ଗତେ କୌମାର
ପରାଜିତ ଯାକୁ ସୁଷମାରେ ମାର ।
ଚୁମ୍ବି ନରମଣି ଶ୍ରୀମୁଖ ଯାହାର
ଅମର ସଂପଦେ ଦିଅନ୍ତି ଧିକାର ।
ଗଙ୍ଗବଂଶଙ୍କର ଏ ନେତ୍ର ସଂଖାଳି
ବିଧିକି ଗଢିଛି ଶୋଭା ସାଞ୍ଚେ ଢାଳି ।
ଅର୍ଦ୍ଧସ୍ଫୁଟ ମିଷ୍ଟ ଭାଷୀ ଦିଗମ୍ବର
ଶୈଶବ-ସୁଲଭ ବେଶ ଦିଗମ୍ବର ।
ତୋର ଜଳସ୍ରୋତ ତୀରେ ନିତିଆସି
ବୁଲି ତୋଳୁଥାନ୍ତି ପୁଷ୍ପରାଶିରାଶି ।
ଫିଙ୍ଗିଦ୍ୟନ୍ତି ଯେବେ ତୋର ସ୍ରୋତଜଳେ
ଅନ୍ତଃପୁରେ ଆଣି ଦେଉତାଚଞ୍ଚଳେ ।
ତେ ତୀର ଶଇଳୁଁ କଲେ ଦରଶନ
ଦିଶେ ନେତ୍ରେ କେତେ ଶୋଭା ଅତୁଳନ ।
ରମ୍ଭାଦେବୀଙ୍କର ଶ୍ୟାମକାୟଗିରି(୭)
ବର୍ଣ୍ଣନା ଅତୀତ ଯା ସୌନ୍ଦର୍ଯ୍ୟ ଶିରି ।
ଚତୁର୍ଦ୍ଦିଗେ ଫଳପୁଷ୍ପେ ହୋଇସାଜି
ଦିଶନ୍ତି କିଶୋଭା ଘନବନରାଜି ।
ସେହି ବନୁ ଶୁକେ ଧାନ୍ୟ ଆହରଣେ
ଆସୁଥାନ୍ତି ଉଡିକମଳା କାନନେ(୮) ।
ଶର ବୃକ୍ଷ ମୂଳେ ହୋଇ ଅଭିଷିକ୍ତ
ସରଯୂ ନାମରେ ହେଲେ ଅଭିହିତ (୯) ।
ସେ ଦିନୁ ପବିତ୍ର ରାଜ୍ୟ ରାଜଗାଦୀ
କଂଧଙ୍କର ଦାବୀ ହୋଇଲା ତମାଦି ।
ପ୍ରାଚୀନ ଦୁର୍ଗରେ ରହି ମହୋଲ୍ଲାସେ
ଅସୁଥିଲେ ବର୍ଷେ ବର୍ଷେ ତୋର ପାଶେ ।
ହର୍ଷେ ଅବଗାହୀ ତୋ ନିର୍ମଳ ଜଳେ
ବଂଚୁଥିଲେ ଦିବା ଅତି କୁତୁହଳେ ।
ଗୁନ୍ଥି ବନ୍ୟ ପୁଷ୍ପେ ହାର ମନୋହର
ବନ୍ଦୁଥିଲେ ଦେବୀ ଅଭୟ ପୟର ।
ଶ୍ରୀ ପ୍ରତାପଦେବ(୧୦)ବୀର ମହୀପାଳ

ବୈରୀ ପକ୍ଷେ ଯେହ୍ନୁ ମୂର୍ତ୍ତିମନ୍ତ କାଳ ।
ଧର୍ମକର୍ମେ ଯାର ନିରନ୍ତର ମତି
ବିଷ୍ଣୁପାଦ ପଦ୍ମେ ଅଚଳା ଭକତି ।
ଚାରୁ ଦେବାଳୟ (୧୧)ଭିତ୍ତି ସଂସ୍ଥାପନ
କଲେତୋ ଅଦୂରେ ହୋଇ ହର୍ଷମନ ।
ଭ୍ରମୁଥିଲେ ନିତି ତୋର ପାର୍ଶ୍ୱେ ଆସି
ତୋଷୁଥିଲୁ ଦେଇ ଶୀତ କଣ ରାଶି ।
ଦେଖି ତୋର ତୀରୁଁ ରମ୍ୟ ଉପବନ(୧୨)
ଶୀତଳ ହୁଅଇ ମାନବ ଲୋଚନ ।
କିନ୍ତୁ ଜନ୍ମେ ମନେ ଦୁଃଖ ଘୋରତର
କାହିଁଗଲେ ଆହା!! ଶ୍ରୀ ବ୍ରଜସୁଂଦର ।
ରାଜ ମୁକୁଟକୁ କରିଣ ବହନ
ନୋହୁଥିଲା କେବେ ତୁଷ୍ଟ ତାଙ୍କମନ ।
ତୋ ତୀରେ ରଚିଣ ଚାରୁ ଉପବନ
ଶାସ୍ତ୍ରାଳାପେ ତହିଁ ବଞ୍ଚୁଥିଲେ ଦିନ, ।
ତୋ ତୀର କାନନୁଁ ବନ୍ୟପୁଷ୍ପ ଆଣି
ମଣ୍ଡୁଥିଲେ ସଦା-ସାରଦା-ଭବାନୀ
ତୋ ପାର୍ଶ୍ୱେ ମୁହୂର୍ତ୍ତେ କରିଣ ବିହାର
ମଣୁଥିଲେ ମନେ ରାଜ୍ୟ ଧନ ଛାର, ।
ସଦା ଜିତେନ୍ଦ୍ରିୟ-ବୈଷ୍ଣବଙ୍କ ପାଇଁ
କେତେ ମଠ ଭୂପ ଅଛନ୍ତି ତୋଳାଇ ।
କହ ନିର୍ଝରିଣୀ ତୋତେକରି ଦୂର
ବାମଣ୍ଡା ବାସୀଙ୍କୁ କରିଣ ବିଧୂର ।
କାହିଁଗଲେ କେଉଁ ସୁଖ ଚିନ୍ତି ମନେ
ଜାଣିଥିଲେ ମୋତେ କହଗୋ ବହନେ, ।
କି କରିବି ଅବା ଶ୍ରବଣେ ମୁଁ ତାହା
ପାଇବକି ପାପୀ ତାଙ୍କ ଯିବା ରାହା ।
ସେ ଯେଣୁ ତୋହର ଅତିସ୍ନେହୀ ଜନ
ସ୍ମାରକ ପରାୟେ ରମ୍ୟ ଉପବନ ।
ଦେଇଣ ନିର୍ମଳ ଜଳ ଅଛୁ ପାଳି
ସ୍ୱର୍ଗୀୟ ସୌରଭ ଦେଇଥାନ୍ତି ଢାଳି ।
ତୋର ପାଶେ ଆସି କୋହ୍ଲ ନାରୀକୁଳ
ତୋଳି ସପଲ୍ଲବ ପେଣ୍ଡା ପେଣ୍ଡା ଫୁଲ,।
ଭୂଷିତ ହୋଇସେ କୁସୁମ ସ୍ତବରେ
ମଦ୍ୟ ପାନକରି ମତ୍ତ ହଲ୍ଲିଷକେ (୧୩) ।
ତୋ ନିକଟ ଦେଶେ ଭୀଷଣ ଶ୍ମଶାନ
ଦେଖି ହୁଏ ହୃଦ ଭୟେ କମ୍ପମାନ ।
କେତେ କେତେ ପ୍ରାଣୀ ନେଇ ଦୁଷ୍ଟକାଳ
କରିଅଛୁ ତାଙ୍କ ଅସ୍ଥି ଶିରମାଳ ।
ଭସ୍ମ ବିଭୂଷିତ ଶରୀର ନିକଟ
ଦେଖି ପ୍ରାଣୀ ପ୍ରାଣ ହୁଏ ଛଟପଟ ।
ତୋ ଦର୍ଶନେ ମିଳେ ଯେତେ ସୁଖ ଧନ
ଏହା ଦେଖି ନର ଦିଏ ବିସର୍ଜନ " ।
ସଂସାରକୁ ଯେହ୍ନୁ ମଣେ ସୁଖାଗାର
ଏହିଠାରେ ତାକୁ ଦିଅଇ ଧିକ୍କାର ।
ତୋ ନିକଟ ଦେଶ ମଣି ନିକାଞ୍ଚନ
ଭ୍ରମୁଥାନ୍ତି ଜଟାଧାରୀ ସନ୍ଥଜନ ।
ଧର୍ମ ଅର୍ଥ କାମ ମୋକ୍ଷଦା ଶଙ୍କର
ମୁଗ୍ଧ ହୋଇ ସେହି ସୁରୂପେ ତୋହରି
ଜପନ୍ତି ରୁଦ୍ରାକ୍ଷ ମାଳେ ନିତ୍ୟ ହରି ।
ଚନ୍ଦ୍ରମୌଳୀ ଚନ୍ଦ୍ରଚୂଡ଼ୁଁ ଗଙ୍ଗାବାରି
ପରାୟେ ଶିଖରୀ ଶିଖରୁ ବାହାରି ,।
ସାଧୁଅଛୁ ଯେତେ ଲୋକ ଉପକାର
ବର୍ଣ୍ଣିବାକୁ ତାହା ଶକତି କାହାର ।
ତୋର କୃପାବର୍ଷୁଁ କୃଷକ ସକଳେ
ଲଭନ୍ତି ବିବିଧ ଶସ୍ୟ କୁତୂହଳେ ।
ରାଜ ଅନୁରୋଧେ ଚନ୍ଦ୍ରହାର-ପରି
ଖେଳୁଥାଏ ଚାରୁ ପ୍ରବାହ ତୋହରି ।
ଗମି ଅନ୍ତଃପୁରେ ଯବ ନାଳେ ଜବେ
ମୁଗ୍ଧକର ସର୍ବେ ଅପୂର୍ବ ତାଣ୍ଡବେ ।
ଇଚ୍ଛିଲେ ଦଣ୍ଡକେ ଦୁର୍ଗେରହୁ ଘେରି
ରଚୁ ମୁହୂର୍ତ୍ତକେ ସଲୀଳ ପାଚେରୀ ।
ଧନ୍ୟ ନିର୍ଝରିଣୀ ପବିତ୍ର ସଲୀଳା,
ଭେଦିବ ନଗରୀ ରଚି ନାନା ଲୀଳା ।
ସୁନ୍ଦର ଲହରୀ ମାଳିକା ସଜାଇ
ଦେଉଅଛୁ ବ୍ରାହ୍ମୀ ବକ୍ଷରେ ଲମ୍ବାଇ ।
ତଦ୍ବତେ ଯାପାଶେ ଆସି ଖଣ୍ଡାଧାର (୧୪)
ଚରଣ ଚୁମ୍ବନ କରେ ବାରମ୍ବାର ।

ଯା ତଟ ବାସିନି ରମ୍ଭା ସୁଲୋଚନା
ଧାଉଁ ତହିଁ ନିତ୍ୟ ଉଜ୍ଜଳ ବରଣା ।
କନ୍ୟା ଦେଖି ଯଥା ଆନନ୍ଦ ଜନନୀ
ତେସନ ସେ ବ୍ରାହ୍ମୀ ବ୍ରହ୍ମାଣ୍ଡ ପାବନୀ ।
ପ୍ରସାରି ଲହରୀ କର ଆଲିଙ୍ଗନେ
ଘେନିଯାନ୍ତି ନିଜ ଉତ୍ସଙ୍ଗେ ବହନେ ।
ବିଦୀର୍ଣ୍ଣ ପାଷାଣେ ପକାଇଣ ତାଳ
ଟେକନ୍ତି ଆକାଶେ ତରଙ୍ଗ ଉତ୍ତାଳ ।
ନିର୍ଝରିଣି ଏବେ ମାଗୁଛି ମେଲାଣି
ବନ୍ଧକର ହୋଇ ଦୀନହୀନ ପ୍ରାଣୀ
ନୁହେ ଲୋକାଧୀନ ଯେଣୁ ଏ ହୃଦୟ
ତେଣୁ ଥାଇ ମୋର ପରମ ଆଗ୍ରହ
ତୋର ଶୋଭାସ୍ବଦେ ହେଲାବେଳେ ଧନ୍ଦି
ଜଂଜାଳ ଜାଲରେ ପଡେ ହୋଇ ଛନ୍ଦି ।
ମୂର୍ତ୍ତିମନ୍ତ ପାପ ମୋହର ପ୍ରହରୀ
ନ ଗଲେ ତୋ ପାଶୁ ବଳେ ନେବେ ଧରି
କରିଅଛି କେତେ ବାର ଅନୁଭବ
ଈଙ୍କେ ଯିବିକାଟି ବିଷୟ ବୈଭବ
ତୋ ତୀର ବିଶାଳ ପାଷାଣ କନ୍ଦର
ରମ୍ୟ ହର୍ମ୍ମ୍ୟ ଯହୁଁ ତୁଙ୍ଗୁ ତୁଙ୍ଗତର
ବସି ଏକା ତହିଁ ହୋଇ ହର୍ଷମନା
କରିବି ସଶ୍ରଦ୍ଧେ ଭାରତୀ ବନ୍ଦନା
ସଜାଡି ଗୁନ୍ଥିବି ବନ୍ୟପୁଷ୍ପେ ହାର
ହାରେ ସ୍ନେହୀ ଜନେ ଦେବି ଉପହାର
ଏହିପରି ମୋର ହୃଦୟ କାସାରେ
ଖେଳେ ଆଶା ମୀନ ବିବିଧ ପ୍ରକାରେ
କିନ୍ତୁ ନିର୍ଝରିଣୀ ଆୟୁଯାଏ ଚାଲି
ପଡିଛି କୁବେଣୀ ମାନ ନାହିଁ ଖାଲି ।
ତୋହ ପାଶେ ଦିନେ କରି ଆଗମନ
କରୁଥିଲି ତୋର ରୂପ ଦରଶନ
ଦେଖୁଥିଲି ଶକ୍ର ଚାପ ମନୋହର
ଝଲୁଣ୍ଠିତ ଜଳ ତାଣ୍ଡବେ ତୋହର
ଶୀତାକଣେ ଆର୍ଦ୍ରକଲୁ ମୋର ମୁଖ
ବିଦ୍ୟୁତ୍ପ୍ରାୟେ ହୃଦେ ଲୁଚିଗଲା ଦୁଃଖ
ଦୁଃଖାନ୍ତେ ଯା କହି ସୁଖ ଅଭ୍ୟୁଦୟ
ମୋ ଭାଗ୍ୟେ ସେହିତା ଘଟିଲା ନିଶ୍ଚୟ ।
ଅନାଇଲି ଉର୍ଦ୍ଧ୍ୱେ ତାରୁ ଲତାବଳୀ
ଅଛନ୍ତି ତୋ ପରେ ଚନ୍ଦ୍ରାତପ ଭଳି
ବନ ବିହଙ୍ଗର କାକଳୀ ମଧୁର ।
ସେ ସ୍ୱର୍ଗୀୟ ଦୃଶ୍ୟେ ଭୁଲିଲା ନୟନ
ଜଡପ୍ରାୟ ବଶହେଲା ମୋର ମନ ।
ସେ ସୌନ୍ଦର୍ଯ୍ୟ ସୁଧା କରୁଁ କରୁଁ ପାନ
ନିଦ୍ରାଦେବୀ କୋଳେ ହୋଇଲି ଶୟାନ ।
ସ୍ୱପନେ ଦେଖିଲି ସମ୍ମୁଖେ ମୋହରି
ଅପୂର୍ବ ବେଶରେ ଦେବି ବାଗୀଶ୍ୱରୀ
ଶୁକ୍ଳାମ୍ବର ଦେହେ କିବା ଶୋଭାପାଏ
ତଡିତଙ୍ଗେ ଶୁଭ୍ର ଅଭ୍ରଲୀଳା ପ୍ରାୟେ
ପୃଷ୍ଠେ ବିକୁଞ୍ଚିତ ରୁଚିର କୁନ୍ତଳ
ବେଣୀ ଲମ୍ବିପଡି ଚୁମ୍ବେ ଧରାତଳ ।
ଦୋଳଇ ନିତମ୍ବେ ସୁବର୍ଣ୍ଣ ମେଖଳା
ଲାବଣ୍ୟ ପୟରେ କଳନାଦୀ ବଳା
ବାମ କରେ ଶୋଭେ ବୀଣା ସପ୍ତସ୍ୱର ।
ମୋହିତ ଯେ ତାନେ ତ୍ରିଦିବ ଅମ୍ବର ।
ଦେଖି ସେ ଦେବୀଙ୍କୁ ମୋହ ସନ୍ନିହିତେ
ନମସ୍କାର କଲି ଭକ୍ତିପୂର୍ଣ୍ଣ ଚିତ୍ତେ ।
ଆଶୀର୍ବାଦ ମୋତେ କଲେ ଶୁଭ୍ରାଙ୍ଗନା
କହିଲେ ପୂରିବ ବତ୍ସ ତୋ କାମନା
ଏତେ କହି ଦେବୀ ଅଦୃଶ୍ୟ ବହନ
ଘନ କୋଳେ ଶୁଭ୍ର ଚପଳା ଯେସନ ।
ଦେବୀ କୃପା ମୋତେ କଲା ଭାଗ୍ୟବାନ
ଜନ୍ମିଲା କିଶୋର ହୃଦେ ଦିବ୍ୟଜ୍ଞାନ ।
ବସିଣ ବାଲୁତ–ହୃ ଦଶ ତଦଳେ
ବଜାଇଲେ ବାଣୀ ବୀଣା କୁତୁହଳେ ।
ଭେଦି ହୃଦଉଠେ ନୀଳ ଗଗନକୁ
କିନ୍ତୁ ନ ଶୁଭିଲା ତାହା ମୋ କର୍ଣ୍ଣକୁ ।
ଭରତୀୟା ପକ୍ଷୀ ତାନ ଦେଲା ପରି
ଶୁଭୁଥିଲା ମାତ୍ର କର୍ଣ୍ଣକୁ ମୋହରି ।
ଶୁଣି ଯଥା ଧେନୁ ଗଳ ଘଣ୍ଟିନାଦ

| | |
|---|---|
| | ସେହି ମୋ ଜୀବନ ପ୍ରଥମ ଦିବସ (୧୬) । |
| ଗୋପାଳ ବାଳକେ ହୋଇଣ ଆହ୍ଲାଦ । | ଆଦ୍ୟ ବର୍ଣ୍ଣନେ ତୋ ରୂପ ଅଭିରାମ |
| ପୁଣୁ ଗୀତ ଗାଇ ହରଷେ ଧାମନ୍ତି | ରସାଣିଲା ସେହିରୂପେ ମୋର ନାମ । |
| ଯଥାର୍ଥ ଭାରତୀ,ଶୁକ୍ର ନ ଜାଣନ୍ତି । | କର ଦିନୁ ଦିନ ସେ ନାମ ଉଜ୍ଜଳ |
| ଶିଶୁ ସ୍ୱର ଯାହା ରମେ ଲୋକଚିତ୍ତ | ଭିକ୍ଷା ମୋ ତୋ ପାଶେ ଏତିକି କେବଳ । |
| ପ୍ରଳାପ ସିନା ତା ନୁହେତ ସଙ୍ଗୀତ । | ପ୍ରଭାବିନ୍ଦୁ ନଶୁ ହେଲେଣି ଅନ୍ତର |
| ତେସନ ଗାଇଲି ହୋଇ ମୁଁ ହରଷ | ବିଦାହେଲି ଥାଉ କରୁଣା ତୋହର । |

୧-ମାଯାଣବେରୀ ବାମଣ୍ଡା ଯୁବରାଜ ପ୍ରଣୀତ ବ ୨-ସିନ୍ଦୁରିଆ- ଦେବଗଡର ଦକ୍ଷିଣ ଦିଗସ୍ଥ ପ୍ରାଚୀରକାର ସ୍ୱନାମ ପ୍ରସିଦ୍ଧ ପର୍ବତମାଳା । ୩-ଦେବଗଡର ଦକ୍ଷିଣରେ ପ୍ରାୟ ୨ ମାଇଲ ଦୂରରେ ଝାଡେଶ୍ୱର ମନ୍ଦିର ପ୍ରତିଷ୍ଠିତ । ୪-ବଡଯୋର-ଗିରିନଦୀ ପ୍ରସାରିତ ହୋଇ ସ୍ଥାୟୀ ସ୍ରୋତ ହେଲେ ଏ ଦେଶରେ ତାହାକୁ ବଡଯୋର କହନ୍ତି । ଏହା ଝାଡେଶ୍ୱରଙ୍କ ଅନତିଦୂରରେ ପ୍ରବାହିତ। ୫-ସତୀଘାଟ-ବଡଯୋରର ଏକାଂଶ ଏହିଠାରେ ୪ ରାଜା ଅର୍ଜୁନ ଦେବଙ୍କ ସହଧର୍ମିଣୀ ସତୀ ହୋଇଥିଲେ। ଏ ଠାରେ ୧୨ ହାତର ଗୋଟିଏ ଦେଉଳ ଅଦ୍ୟାପି ବିଦ୍ୟମାନ ଅଛି। ୬-ବାମଣ୍ଡା ମହାରାଜାଙ୍କ ଦ୍ୱାରା ବସନ୍ତଲୀଳାର୍ଥିତ ବିରଚିତ ଉଦ୍ୟାନ ଗଡଜାତ ମାନଙ୍କରେ ତୁଳନାକୁ ବିରଳ ଲକ୍ଷିତ ହୁଏ ।୭-ରମ୍ଭା ପର୍ବତ ଦେବଗଡର ଉତ୍ତର ଦକ୍ଷିଣରେ ଅବସ୍ଥିତ ।ରମ୍ଭାଦେବୀ . ଏହି ପର୍ବତର ଅଧିଷ୍ଠାତ୍ରୀଦେବୀ । ୮ - କମଳା କାନନ ରାଜଧାନୀର ଦକ୍ଷିଣରେ ଅବସ୍ଥିତ । ୯- ଶରବୃକ୍ଷ ମୂଳେ ରାଜ୍ୟାଭିଷେକ ସଂପନ୍ନ ହୋଇଥିବାରୁ ସରଯୁ ଦେବ ନାମ ହୋଇଥିଲା ୯- ପ୍ରାଚୀନ ବାମଣ୍ଡା ଦୁର୍ଗ କୋଚିଣ୍ଡା ତହସିଲରେ ଥିଲା । ଦୁର୍ଗର ଭଗ୍ନାବଶେଷ ଅଦ୍ୟାପି ଦୃଷ୍ଟି ଗୋଚର ହୁଏ । ୧୦- ପ୍ରତାପ ଦେବ- ବାମଣ୍ଡା ରାଜବଂଶର ୧୩ଶ ପୁରୁଷର ରାଜା ଏ ଅତ୍ୟନ୍ତ ଦେବଭକ୍ତ ଥିଲେ । ୧୧- ପୁରୁଣା ଗଡ ଦେବଗଡ ନିକଟବର୍ତ୍ତୀ ପ୍ରାଚୀନ ରାଜଧାନୀ,ଏଠାରେ ଜଗନ୍ନାଥ ମହାପ୍ରଭୁଙ୍କ ବଡଦେଉଳ ପ୍ରତାପଦେବ ଦ୍ୱାରା ନିର୍ମାଣ ହୋଇଥିଲା,ଦେଉଳର ମୁଖଶାଳା ପ୍ରଭୃତି ରାଜା ବ୍ରଜସୁନ୍ଦର ନିର୍ମାଣ କରାଇ ଅଛନ୍ତି । ୧୨- ପ୍ରଧାନପାଟ ବଗିଚା-ପାଷ୍ଟ ଖଣ୍ଡା ପର୍ବତର ପାଦଦେଶରେ ସୁଶୋଭିତ । ୧୩- କୋହ୍ନ ଜାତୀୟ ଯୁବତୀ ସ୍ୱାମୀନେ ମର୍ଦ୍ଦଳ ବାଦନ କରି ପୁରୁଷମାନଙ୍କ ହସ୍ତ ଧାରଣ ପୂର୍ବକ ମଣ୍ଡଳାକାର ହୋଇ ନୃତ୍ୟ କରନ୍ତି । ୧୪-ଖଣ୍ଡାଧାର ଜଳପ୍ରପାତ ବଣେଇ କିଲ୍ଲାରେ ଅବସ୍ଥିତ ୧୫- ରମ୍ଭାଦେବୀ-ବାରକୋଟ ବ୍ରାହ୍ମୀ ତଟରେ ଅବସ୍ଥିତ ।୧୬- ୧୮୮୮- ସାଲରେ ପ୍ରଧାନପାଟ ଶୀର୍ଷକ ଗୋଟିଏ କ୍ଷୁଦ୍ର କବିତା ରଚନା କରି ସଂବଲପୁର ହିତୈଷିଣୀରେ ପ୍ରକାଶ କରିଥିଲି । ଛାତ୍ରଜୀବନରେ ମୋର ସେହି କବିତାଟି ପ୍ରଥମ ସଂରଚନା,ତତ୍ ପୂର୍ବେ କବିତା ଲେଖିବାକୁ ମୋର ଆଦୌ ଶକ୍ତି ନ ଥିଲା ।

* ପ୍ରଧାନପାଟ ଶୀର୍ଷକ ଏ କବିତାଟି କବି ଦାମୋଦର ମିଶ୍ରଙ୍କର ପ୍ରଥମ କବିତା । ଏହା ସଂବଲପୁର ହିତୈଷିଣୀ ( ୭/୧୧) ତା ୧୪/୦୮/୧୮୯୫ ରୁ ଆରମ୍ଭ ହୋଇ (୭/୧୩) ତା ୨୮/୦୮/୧୮୯୫ ସଂଖ୍ୟାରେ ସମାପ୍ତ ହୁଏ । ଏ କାବ୍ୟଟି ବାମଣ୍ଡା ପ୍ରେସରେ ସେହି ବର୍ଷ ପୁସ୍ତିକାକାରେ ପ୍ରକାଶ ଲଭି ଅଶେଷ ଲୋକପ୍ରିୟତା ଅର୍ଜନ କରେ । - ସଂକଳକ ।

ଶୁଭ୍ର-ସ୍ୱଚ୍ଛ-ପୟଃ ପ୍ରପାତ ସୁଭଗା
ହରଜଟା ଭ୍ରଷ୍ଟ-ଯଥା ତ୍ରିପଥଗା
ଶୀକର-ଜଳଦେ ବିଭାବସୁ କର
ସୃଜେଯହିଁ ଶକ୍ର-ଚାପ ମନୋହର ।

(ଚିଲିକା -ରାଧାନାଥ)

# "ପ୍ରଧାନ ପାଟ ପ୍ରପାତ"

(ରାଗ ଶ୍ରୀ-ଆଠତାଳି)

ହରିହର ମହାପାତ୍ର।

(ଏ) ନୀରଝର (ବନ୍ଧୁ !) ନିରନ୍ତର
ବହେ ଝରଝର
ମନୋହର ପଥିକ ଜନର  ।ପଦ।
ଏ ପ୍ରଧାନପାଟ ଗିରି ଶିର ଉତ୍ତୋଳନ କରି
ଦେଖୁଛି ଦିବା ଶର୍ବରୀ ଏହି ଦେବଦୁର୍ଗ ଶିରୀ
ବହିସଦା ମୂରତି ଗମ୍ଭୀର  ।୧।
ସତେକି ଏ ଦ୍ୱିଜବର ଉପବିତ ନିରଧାର
ସୁନିର୍ମଳ ଶୁଭ୍ରତର ପିନ୍ଧିଅଛି ସ୍କନ୍ଧୋପର
ଶ୍ୟାମବକ୍ଷେ, ଦିଶଇ ସୁନ୍ଦର  ।୨।
ନୁହେ ଦ୍ୱିଜ ପରବତ ନୁହେଝର ଉପବୀତ
ଯୋଗୀ ଯୋଗ ମଗ୍ନଚିତ୍ତ ନିଜ ବକ୍ଷ ପଦ ସିକ୍ତ
(ଯେହ୍ନେ) ନେତ୍ରୁଁଝରି, ପ୍ରେମ ଅଶ୍ରୁଧାର  ।୩।
ବିବିଧ ଶିଳା ଶୋଭିତ ନାନାପୁଷ୍ପ ବିକଶିତ
ବହେ ଧାରେ ଧାରେ ବାତ ପ୍ରାଣ ମନ ଉଲ୍ଲସିତ
ଦରଶନେ, ଶ୍ରାନ୍ତି ହୁଏ ଦୂର  ।୪।
ବସି ଲତା ଦୋଳାସନେ ଗନ୍ଧର୍ବ ମଧୁର ତାନେ
ମିଶାଇ ଝର ନିସ୍ୱନେ ରଚ ବିଭୁ ଯଶୋଗାନେ
ଝଙ୍କାରିତ, ହୁଅଇ କନ୍ଦର(ଏ)  ।୫।

*: କବିଙ୍କ "ବିବିଧ ସଙ୍ଗୀତ" (୧୯୦୭) ପୁସ୍ତକରୁ ଗୃହୀତ।

# ପ୍ରଧାନ ପାଟ ପ୍ରପାତ ପ୍ରତି

ରାଜୀବ ଲୋଚନ ଦେବ।

ହେ ପ୍ରପାତ ! ନିରନ୍ତରେ ନିର୍ଜନ କାନନେ
ଉତ୍ତୁଙ୍ଗ ଶୈଳରୁ ପଡ଼ୁ ଭୈରବ ଗର୍ଜନେ।
ଉପଲୁଁ ଉପଳେ ବାଜି ସଲିଳର ଉତ୍-
କ୍ଷିପ୍ତ ଉଠି କରୁଥାଅ ହୀରକକୁ ତୁଚ୍ଛ। -
ଅଂଶୁମାଳି- ଅଂଶୁ ସ୍ପର୍ଶେ ତ୍ରିବର୍ଣ୍ଣ ରଞ୍ଜିତ
ମନୋହର ଶକ୍ରଚାପ ତୋ ଦେହେ ଶୋଭିତ।
ଶୀତଳ ଶୀକର ଘେନି ମନ୍ଦ ସମୀରଣ
ତରୁ ମଞ୍ଜୁ କୁଞ୍ଜ ପୁଞ୍ଜେ କରେ ବିଚରଣ।
ନିଦାଘ ସନ୍ତାପେ ଆସି ଘର୍ମାକ୍ତ ଜନେ
ବିଳସି ହରନ୍ତି ଖେଦ ତୋ ସ୍ୱଚ୍ଛ ଜୀବନେ।
କାହାର ଆଦେଶେ ଶାନ୍ତି ସୁଧା ବିତରଣ
କରି ପ୍ରାଣୀଙ୍କର କରୁ ମାନସ ହରଣ।
କହ ହେ ପ୍ରପାତ ମୋର ଅଥୟ ଜୀବନ
କାହିଁ ଗଲେ ଲଭିବି ମୁଁ ଶାନ୍ତି ନିକେତନ।

*ସଂବଲପୁର ହିତୈଷିଣୀ (୨୦/୪୯) ତା ୨-୧୦-୧୯୦୯ ରୁ ଗୃହୀତ।

ପ୍ରଧାନପାଟର ପ୍ରପାତ ଭୀଷଣ
ନିର୍ଜନ ଗହନେ ଗର୍ଜେ ଅନୁକ୍ଷଣ,
ନୀର-ଆସ୍ତରଣ ଭୃଗୁ-ପ୍ରସ୍ତେ ଯାର
ହୀରକକୁ ଦିଏ ସହସ୍ର ଧିକ୍କାର,
ନିରନ୍ତର ଚନ୍ଦ୍ର-ସାମନ୍ତ ପରାୟେ
ଇନ୍ଦ୍ରଧନୁ ଯାର ଶିରେ ଶୋଭାପାଏ,
ଯହିଁ କେଳିଲୋଳ ଜଳଦେବୀ-କେଳି
ଉପୁଜାଏ ଶତ ସଲିଳ-ହାବେଳି,
ରଚିବେ ଯା ତୀରେ ରୁଚିର ନଗର
ଦୂର ଭବିଷ୍ୟତେ ତୋର ବଂଶଧର
ସେହି ପ୍ରପାତର ପୂତ ତୋୟ ରାଶି
ମିଶୁଅଛି ଏହି ବ୍ରାହ୍ମୀ ଅଙ୍ଗେ ଆସି,
(ନନ୍ଦିକେଶ୍ୱରୀ -ପ୍ରଥମ ସର୍ଗ- ୧୮୮୭-ରାଧାନାଥ).

# ପ୍ରଧାନପାଟ

ଗଙ୍ଗାଧର ମେହେର

ଆହା ସେ ପ୍ରଧାନପାଟ ନେତ୍ର ପ୍ରୀତିକର
ଭାବୁକର ଭାବମୟ ହୃଦୟ ରଞ୍ଜନ,
ଗିରିଶିର ବିଭୂଷିତ ଶୁଭ୍ର ସ୍ୱଚ୍ଛ ଝର
ଆତପ ତାପିତ ତନୁ ତାପ ବିଭଞ୍ଜନ ।
ସମୁଚ୍ଚ ଶିଖରୁ ଲଂଫଦେଇ ବାରଂବାର
ସୁରମ୍ୟ ବିପିନ କୋଳେ ହୁଏ ପ୍ରପତିତ
ସଦାଶିବ ଶିରୁ ଯେହ୍ନେ ଜାହ୍ନବୀର ଧାର
ଡେଉଁ ଅଛି ତାରିବାକୁ ଭୁବନେ ପତିତ ।
ବିକୀର୍ଣ୍ଣ ହେଉଛି ଦେହୁ ଶୀକର ନିକର
ବୃଷ୍ଟି ହେଉଅଛି ଯେହ୍ନେ ମୌକ୍ତିକ ପଟଳ
ମଧୁର ନିନାଦ କର ମ୍ଳାନି ଗ୍ଳାନି-ହର
ଦେଖିଦେଲେ ହୁଏ ମନ ପ୍ରାଣ ସୁଶୀତଳ ।
ଶୁଭ୍ରକରି କୁଣ୍ଡ ଫେନ ବୁଦ୍ ବୁଦ୍ ନିବହେ
ସୁବିମଳ ସ୍ରୋତ ହୋଇ ବନ ଗର୍ଭେ ବହେ ।

*ସଂବଲପୁର ହିତୈଷିଣୀ- ୨୨ ଭାଗ/ ୫ମ ସଂଖ୍ୟା ତା ୧୯-୧୧-୧୯୧୦ ।

# ବାମଣ୍ଡା ରାଜ ପ୍ରଶସ୍ତି

ମଧୁସୂଦନ ରାଓ

ବହୁବର୍ଷ ପରେ ଆଜି ଏ ନୟନ ଦେଖିଲା ଆବର
କୈଦନ୍ତା ପର୍ବତ ପ୍ରସ୍ଥେ ତପୋମୂର୍ତ୍ତି ପ୍ରଧାନପାଟର ।
କି ଭୂମା ତପସ୍ୟାବ୍ରତେ କି ଅସୀମ ଆତ୍ମ ବିସର୍ଜନେ
ସେ ମହା ପ୍ରତାପରତ କଳ୍ପବ୍ୟାପୀ ସଂକଳ୍ପ ସାଧନେ
ସଞ୍ଚିତ ଅନନ୍ତ ତପୋରାଶି ପ୍ରାୟେ ତାର ବାରିରାଶି
ଢାଳି ଦେଉଅଛି ପ୍ରେମେ ଧରାତଳେ ସେ ମହା ସନ୍ୟାସୀ
ଊର୍ଦ୍ଧ୍ୱକୁ ଅନାଇ ସଦା କି ଅଭୟ ଆଶା ଆଶ୍ୱାସର ।
କି ଗମ୍ଭୀର ବେଦ ମନ୍ତ୍ର ଝଙ୍କାରରେ ଭରଇ ଅମ୍ବର ।
ଏ ପରମୋଦାର ଦୃଶ୍ୟ ଏହିମହା ତପସ୍ୟା-ମୂରତି
ଦେଖି ଦେଖି କି ଆନନ୍ଦ ଲଭୁଅଛ ହେ ବାମଣ୍ଡା-ପତି ।
ଏହି ପୁଣ୍ୟପୀଠ ପାଶେ ତୋଳୁଅଛ ବସନ୍ତ ନିବାସ
ତଥିପରେ ଆଶୀର୍ବାଦ ବରଷନ୍ତୁ ପ୍ରଭୁ ଶ୍ରୀ ନିବାସ
ପରିଶେଷେ ଏ ପ୍ରାର୍ଥନା ଜଣାଉଛି ରାଜ-ସନ୍ନିଧାନେ
ଏ ନିଭୃତ ତୀର୍ଥ-ଶାନ୍ତି ବଢୁ ତବ ପବିତ୍ର ବିଧାନେ

ତା ୨୩/୦୫/୧୯୧୧

* ଏ କବିତାଂଶ କବିଙ୍କ " ବାମଣ୍ଡା ରାଜ ପ୍ରଶସ୍ତି" ରୁ ଗୃହୀତ ।

---

" ବାମଣ୍ଡା ରାଜ ପ୍ରଶସ୍ତି" ଦେବଗଡ ରହଣୀକାଳ ମଧ୍ୟରେ ଉକ୍ତ କବି ରଚନା କରି ହିତୈଷିଣୀ ମେଶିନ ପ୍ରେସରେ ୧୯୧୧ ରେ ପ୍ରକାଶିତ କରିଥିଲେ ।ସପ୍ତାହ ବ୍ୟାପୀ ରହଣୀ ମଧ୍ୟରେ ସେ ବିଭିନ୍ନ ସାରସ୍ୱତ ଆଲୋଚନା ସଭାରେ "କବିତା ଓ କଳ୍ପନା " "ଅଭିବ୍ୟକ୍ତିବାଦ" ପ୍ରଭୃତି ବିଷୟରେ ଭାଷଣ ଦେଇଥିଲେ । ୨୮/୦୫/୧୯୧୧ ରବିବାର ଦିନ ସ୍କୁଲ୍ ଗୃହରେ ଅନୁଷ୍ଠିତ ସଭାରେ ବାମଣ୍ଡା ରାଜ ପ୍ରଶସ୍ତି ଅମୂଳ ପାଠ କରି ରାଜାଙ୍କ ହସ୍ତରେ,ଅର୍ପଣ କରିଥିଲେ । ( ସଂବଲପୁର ହିତୈଷିଣୀ ୨୨/୩୩-ତା ୦୩/୦୬/୧୯୧୧ )

* ଏ କବିତାଂଶଟି ଦୁଇଟି ଭାଗରେ ମାର୍ବଲରେ ଖୋଦିତ ହୋଇ ବସନ୍ତ ନିବାସରେ ସଂଯୋଜିତ ହୋଇଥିଲା ।- ସଂକଳକ ।

ଏ କାଳେ ପ୍ରଧାନ ପାଟର ପୂତ ପ୍ରପାତ ନୀରେ
ଫୁଟିବ ତୋ କୁଳ କମଳ ଦେବଦୁର୍ଗ ମହୀରେ ।

(ପଦ୍ମାବତୀ ପରିଣୟ ପୃ-୮୯- ଭାଗିରଥୀ ରଥ)

## ପ୍ରଧାନପାଟ ପ୍ରପାତ ପ୍ରତି

ଦାମୋଦର ମହାପାତ୍ର
ପ୍ରାକ୍ତନ ସ୍କୁଲ୍ ଛାତ୍ର, ବାମଣ୍ଡା

ଧନ୍ୟରେ ପ୍ରପାତ ତୋହର ଜୀବନ
ଉପଲ ଶଯ୍ୟାରେ କରି ତୁ ନର୍ତ୍ତନ ।
ଯେଉଁ ଗଙ୍ଗବଂଶେ ପୂଣ୍ୟ ଯଶ-ଗଣ
ମହାତେଜା ମହାବୀର ବୁଦ୍ଧିମାନ,
ସୁମନେ ସୁକ୍ଷଣେ ଜନମ ଲଭିଣ
ନା ନା ସ୍ଥାନେ କୀର୍ତ୍ତି,ସତ୍‌କ୍ରିୟା ସାଧିଣ
ସ୍ଥାପିଛନ୍ତି ସ୍ଥାପୁଛନ୍ତି ବର୍ତ୍ତମାନ
ଯେକୀର୍ତ୍ତି ସର୍ବଦା ରହିବ ଅକ୍ଷୁନ୍ନ
ସେହି ଗଙ୍ଗ ବଂଶ କିର୍ତ୍ତି ତୁ କିର୍ତ୍ତନ
କରୁଛୁ ତେଣୁ ତୋ ସାର୍ଥକ ଜୀବନ ।
ଦେବଦୁର୍ଗ ମଧ୍ୟେ ହୋଇ ପ୍ରବାହିତ
ଦୁର୍ଗ ବାସୀଙ୍କର କରୁଅଛୁ ହିତ
ରକ୍ଷା କରିଅଛୁ ତାଙ୍କର ଜୀବନ
ତେଣୁ ତୁହି ଅଟୁ ପରମ ସଜ୍ଜନ ।
ପ୍ରକାଶୁ ମହତ୍ତ୍ୱ ନିଜ ଦମ୍ଭର
ପରହିତେ ବ୍ରତୀ ହୋଇ ନିରନ୍ତର ।
ପରିଶେଷେ ତୋତେ ପ୍ରର୍ଥନା ମୋହର ।
ଅତି ହରସରେ ଉଚ୍ଚ ଧ୍ୱନିକର ।
ଯାହାଙ୍କର କୀର୍ତ୍ତି ହୋଇଣ ବିକୀର୍ଣ୍ଣ
ପ୍ରଜାଙ୍କର ସୁଖ କରୁଛି ବର୍ଦ୍ଧନ
ବୋଲ ସଦା ସେହି 'ଜୟ ତ୍ରିଭୁବନ
ଦେବ ମହାରାଜ ପରଜା ରଞ୍ଜନ ।

*ସ.ହି.- ୨୩/୨୩-ତା ୨୩/୦୩/୧୯୧୨ ରେ ପ୍ରକାଶିତ ।

---

## ପ୍ରଧାନ ପ୍ରପାତ

ଶ୍ରୀମାନ ପ୍ରତାପ ଗଙ୍ଗ ଦେବ
ବାମଣ୍ଡା ପଟ୍ଟାୟତ
ରାଜକୁମାର କଲେଜ, ରାୟପୁର ।

*(ରାଗ କଳହଂସ କେଦାର)*

ଦେବ ଦୁର୍ଗରେ ଗାଜେ ପ୍ରଧାନ ପାଟ ।
ବସିଛି ଯହିଁ ସଦା ସୌନ୍ଦର୍ଯ୍ୟ ହାଟ ଯେ ।।
ପ୍ରପାତ ବହିପଡେ ଘୋର ନିର୍ଘୋଷେ ।
ତରଳ ରୌପ୍ୟ ସ୍ରୋତ ପ୍ରାଏ ଦିଶେ ଯେ ।।
ଜଳ କଣିକା ଉଡେ ବାୟୁ ତରଙ୍ଗେ ।
ଖେଳଇ ଶକ୍ର ଚାପ ତହିଁ କି ରଙ୍ଗେ ଯେ ।।
ଦେବ ଦୁର୍ଗ ବାସୀଙ୍କୁ ଦେଇ ଜୀବନ ।
ହୋଇଛି ଧନ୍ୟ ସଦା ଝର ଜୀବନ ଯେ ।।
କୁସୁମ ରାଜି ଶୀତ ବାତେ ପ୍ରଫୁଲ୍ଲ ।
ପିଅନ୍ତି ମଧୁଭ୍ରମି ଭ୍ରମର କୁଳ ଯେ ।।
ହରନ୍ତି ଗୁଣ୍ଠୁଗୁଣୁ ଶବଦେ ମନ ।
ନୀର ତାଳକୁ କି ସେ ସଙ୍ଗୀତ ତାନ ଯେ ।।
ଭାରତି ତୀର୍ଥ ତୁହି ଅଟୁ ନିର୍ଝର ।
ଭାବୁକ,କବି,ବିଜ୍ଞ ଅସଂଖ୍ୟ ନର ଯେ ।।
ଏଠାକୁ ଆସି କିଏ ଜହନି ଥରେ ।
ଯାଆନ୍ତି ଫେରି ତୋତେ ନ ଚାହିଁ ବାରେ ଯେ ।।
ତୁ ଅଟୁ ସଭିଙ୍କର ହୃଦୟ ଧନ ।
କଳ୍ପାନ୍ତ ଜୀବୀ ତୁହି ପୂର୍ଣ୍ଣ ଯୌବନ ଯେ ।।
ତୋ ଯଶ ଗାଉଛନ୍ତି କବି ସମସ୍ତେ ।
ନମୋଃ ପ୍ରଧାନ ପାଟ ନମୋ ନମସ୍ତେ ଯେ ।।

*ଉତ୍କଳ ଦୀପିକା(୩୩/୨୫)ତା-୭.୭.୧୯୩୪ ରେ ପ୍ରକାଶିତ ।

# ପ୍ରଧାନପାଟ ନିର୍ଝରୀ ବର୍ଣ୍ଣନା

( ଶିବ ତାଣ୍ଡବ ବୃତ୍ତଂ )

ନୀଳକଣ୍ଠ କବିଭୂଷଣ

ପ୍ରଧାନପାଟ ନିର୍ଝରୀ ବିଭିନ୍ନ କନ୍ଦରୋଦରୀ
ବିଲୋଳ ବୀଚିଚାତୁରୀନ ଗାଙ୍ଗ କେଳିକନ୍ଦରୀ
ଅନନ୍ତ ମାର୍ଗ ସଂଚରୀ ପ୍ରଭୂତ ଟାପ କର୍ତ୍ତରୀ
ମନୋବିନୋଦ ମାଧୁରୀ ବିଭର୍ତ୍ତି ଜୀବନେଶ୍ୱରୀ
ନୃପେନ୍ଦ୍ର କୀର୍ତ୍ତିପଛିକା ଶରଜ୍ଜଳାଳି ମୌକ୍ତିକା ( ? )
ବିଶୋଭିତ ସ୍ୱଧିତ୍ୟକା ନଗେଶ ମଂଜୁ କନ୍ୟକା
ଧରାଶିରୋ୍ୟଛ ମଲ୍ଲିକା ସଗୁଚ୍ଛମଂଜୁ ମାଳିକା
ଭ୍ରମପ୍ରକାର କାରିକା ବିଭାତି ମୋଦ ଦାୟିକା( ? )
ଜନୌଘ ଦୁଃଖ ହାରିଣୀ ପୁରାରି ମୃଦ୍ଧ ଭୂଷଣୀ
ଭବ ତ୍ରିଲୋକ ତାରିଣୀ ଗୁଣ ବ୍ରଜାପହାରିଣୀ
ସଦା ପରୋପକାରିଣୀ ନୃପାଙ୍ଗଣେ ବିହାରିଣୀ
ମନୋ ବିନୋଦ ଧାରିଣୀ ପ୍ରଯାତି ଶୈଳଚାରିଣୀ(୩)
ଘନା ଘନୋଦକ ଛଟା ବିକୀର୍ଣ୍ଣ ଫେନ ସଙ୍କଟା ।
ଟଟାନ୍ତ ଚାତୁରୀ ନଟା ଚମତ୍କୃତାନ୍ତ-ନିସ୍ଫୁଟ ।
ହୃଦାତ ଟପ ସଂକଟା ପ୍ରଫୁଲ୍ଲ ପୁଷ୍ପ ସଂଫୁଟ
ଭୟାନକ ସ୍ୱରୋଦ୍ଧଟା ପୁନ ଟୁ ତାରଣେ ଦ୍‌ଢଟା
ବର ପ୍ରବହା ଗର୍ଜନା ନୃପାର ଘୋରଟଜଟା
ବିଧାନ କାମକା। ମନା ବନାନ୍ତ ଭୂମି ଖେଳନା
ସୁଖୌଘ ଜୀଭ କାର୍ତ୍ତନ ସୁଦୁର୍ଗ ମଧ୍ୟ ବାସନଂ ।
କୃତୋସ୍ୱବା ଭିବର୍ଦ୍ଧନା ବିଭାତି ଶୈଳନନ୍ଦନା
ସଦୈବ ମେଘ ମଣ୍ଡଳୀ ଜୟେ ଛାୟା ଜଳାବଳୀ
ପ୍ରଦାନ ଭୂମି କନ୍ଦଳୀ କୃତାବନୀ ଗୁହାବଳୀ
ସୁ ଦୁର୍ଗନାରା କୁଣ୍ଡଳୀ କୃତ ପ୍ରବହ ନିର୍ମଳୀ
ଭଟ୍ଟଜ୍ଜନାମ୍ନୁ ବସ୍ଥଳ ପ୍ରଫୁଲ୍ଲ ମଲ୍ଲିପାଟଳାଃ
ଜଳାୟ ଯତ୍ର ପାଟବଂ ନରେନ୍ଦ୍ର କୀର୍ତ୍ତି ଗୌରବଂ
ସମଗ୍ର ଲୋକ ସୌଷ୍ଠବଂ ଲଟାପ୍ରଟା ନମର୍ଦ୍ଦବଂ
ଷର୍ଦ୍‌ପୁଷ୍ପ ଚାରବଂ ବିଲୋଚନା ଚି ବୈଭବଂ
ଅଚିନ୍ତନୀୟ ସଂଭବଂ କରୋତ ଯାନ ବଂନବଂ
ବଳଦରୀ ବିଳୋଦ୍ଭଦଦ୍ଦିଶାଜ ରୋଷଦଂକୂଳବ୍ୱଳଦ୍-ଜଗ ମେଶ୍ୱ
ରୋଗୁରର୍ବ ଗର୍ଜନୋ ଫମାଂ ।
ସଦୈବ ସଚ୍ଚିଦାମ୍ନୁ ଦୋ ନୃପମ୍ନ ଶତ୍ରୁଭ
ର୍ଞ୍ଜନାଂ ଦଧଟି ଶୈଳନନ୍ଦନାମୁଦଂ ଦଦାଟୁ ପଶ୍ୱଟା ।
ବୁଦ୍ୟାବାଗୀଶ ଟୁଟେଲ୍ଲା । ନୟବିନୟ ଗୁଣଗ୍ରାମ ଗମ୍ଭିର ଭାବଃ
ସକୀର୍ତ୍ତ୍ୟା ଗୁର୍ଣ୍ଣ ମୂର୍ତ୍ତିରଃକ୍ଷି ଟିମବଟିନୃପଃ ସଚ୍ଚିଦାନନ୍ଦ ପେବଃ ।
ଗଙ୍ଗାରିଙ୍ଗ ଉତରଙ୍ଗା ଗିରିଝର କପଟାଦ୍‌ଗଙ୍ଗ ବଂଶ ବଟଂସ
ପୁଦୌ ର୍ଦାନୈସ୍ତ ପୋଭିଃ ପ୍ରମୁଦି ଟଦୁଜୟା ଦ୍ରଷ୍ଟିମାମ୍ନା ଟନ୍ନୁନିଂ ।
ବିଦ୍ଦୁଦ୍ଧିଂ ଗ୍ରଣ୍ଠୋମାଦିନ ମିବରଜନୀ କାରଯନ ମୋଜନାନଂ
ତାରା ଜ୍ଞନାର୍ଗଟି ବର୍ତ୍ତାଂ ଶ୍ରବଣ ସୁଖମୟୀଂ ସ୍ୱାୟସିଂହାନସ୍ଥଃ ।
ଚିତ୍ରୈଯତ୍ରୈର୍ଜଳାୟଃ ସଟଟହିଟ କୃତେ ପ୍ରୋଦ୍ୟ ତୋ ଜେନନାନଂ
ବାମଣ୍ଡା କ୍ଷୌଣି ପାଳୋଽବଟୁ କିତଟ ମହାଂ ସଚ୍ଚିଦାନନ୍ଦ ପେବଃ ।
ଶ୍ରୀ ମୁକୁନ୍ଦପୁର ଶାସନ ନିବାସିନା ପଣ୍ଡିତ ଶ୍ରୀ ନୀଳକଣ୍ଠ
କବିଭୂଷଣେ ନଂ ବିରଚିତଂ ।

'ସଂବଲପୁର ହିତୈଷିଣୀ-(୨୩/୨୬) ତା-୧୩-୪-୧୯୧୨ ସଂଖ୍ୟାରୁ ଉଦ୍ଧୃତ ।

> ବାମଣ୍ଡା-ମଣ୍ଡନ ପ୍ରପାତ ଶୀକର
> ସ୍ନାତ ଘନ ବନସ୍ଥଳୀ
> ଛାଡି ଶ୍ୟାମା ଏବେ ସମ୍ରାଟ-ସଦନେ
> କରୁଣେ କରେ କାକଳୀ ।
>
> ( ପାର୍ବତୀ- ରାଧାନାଥ )

# ପ୍ରଧାନପାଟ ପ୍ରପାତ

ଶ୍ରୀମତୀ ରମା କୁମାରୀ ଦେବୀ

ଆହା ସେ ପ୍ରଧାନପାଟ କି ଶୋଭା ଦିଶଇ
ସ୍ୱର୍ଗୁ ବ୍ୟୋମକେଶ ଶିରେ ଗଙ୍ଗା କି ପଡଇ
ଏ ମାଧୁରିମୟ ଦୃଶ୍ୟ ମନ ନେତ୍ରହରା ଚିର
ଏହୁ ଏକା ଅଟେ ସର୍ବ ଶୋଭାର ଭଣ୍ଡାର ।
ଜଳୀୟ ଶିକରସିକ୍ତ ମଳୟ ପବନ
ପ୍ରଫୁଲ୍ଲ କରଇ କ୍ଷଣେ ବିଦଗ୍ଧ ପରାଣ ।
ଗ୍ରୀଷ୍ମ ବର୍ଷା ଷଡଋତୁ ଅବା ଧାରେ ଜଳ
ବହୁଅଛି ଅବିରତ ହୋଇଣ ବିମଳ ।
ସିଂହନାଦ ତୁଲ୍ୟ ଶବ୍ଦ ନିରତେ ଶୁଭଇ
ପ୍ରଧାନ ପ୍ରପାତ ନାମ ଏ ଯୋଗୁଁ ଅଟଇ
ତିନି ଦିଗେ ପଡିଅଛି ପାଷାଣର ବାଡ
ପୁଣି ଚାରିଆଡେ ଅଛି ବୃକ୍ଷର ଉହାଡ ।
ତେଣୁ ରବିକର ଏଥି ନୁହଇ ପ୍ରଖର
ଏ ହେତୁ ଅଟଇ ଏହା ଶୀତର ଭଣ୍ଡାର ।

ବୃକ୍ଷ ପରେ ବସି ପକ୍ଷୀ କରନ୍ତି ନିଃସ୍ୱନ
ନିଃସ୍ୱନ ନୁହଇ ଏହା ଆନନ୍ଦର ଗାନ ।
ବନ୍ୟ ସୁମନ ଫୁଟିଣ ଦିଶଇ ସୁନ୍ଦର
ପ୍ରକଟଇ ବାସ ଚହୁଁ ଦିଗ ଦିଗନ୍ତର ।
ଦଳେ ଦଳେ ଭ୍ରମି ଚହିଁ ଭ୍ରମର ନିଚୟ
ଗୁଣୁ ଗୁଣୁ ସ୍ୱନେ ସଦା ନିଜ କର୍ଯ୍ୟେଲୟ ।
ଆହାଲୋ ପ୍ରଧାନପାଟ; ତୋହର ଜଳରେ
କେତେ ମୀନ ଖେଳୁଛନ୍ତି ମନ ଆନନ୍ଦରେ
ନିକଟେ ବିରାଜି ଏବେ ବସନ୍ତ ନିବାସ
ତୋ ଶୋଭା ବୃଦ୍ଧି କରଇ ରଜନୀ ଦିବସ ।
ତୋ ଶୋଭା କାହାଣୀ ଶୁଣି ଦର୍ଶନ ମାନସେ
ବହୁ ଦୂରୁ ଲୋକେ ଆସୁଛନ୍ତି ତୋର ପାଶେ
ଦର୍ଶନେ ମାନସ ହର୍ଷେ ହୋଇ କୃତ କୃତ
ଭାବୁକେ ଗାବନ୍ତି ଭଳେ ତୋର କୀର୍ତ୍ତି ଗୀତ ।

(ସଂବଲପୁର ହିତୈଷିଣୀ (୨୪/୨୮) ତା ୨୭-୯-୧୯୧୩ ରୁ ଗୃହୀତ ।)

# ବସନ୍ତ ନିବାସ ଦର୍ଶନେ

ହିନ୍ଦି କବିତା (ମାଳିନୀ ବୃତ୍ତ)

ଲୋଚନ ପ୍ରସାଦ ପାଣ୍ଡେୟ

ବିହଗ କର ରହେ ହୈ, ଗାନ ଆନନ୍ଦକାରୀ
ପବନ ବହ ରହାହେ ସ୍ନିଗ୍ଧ ସନ୍ତାପ ହାରୀ,
ଅମୃତ ମଧୁର ଛାୟୀ ଶୈଲ ଶୋଭା ଉଦାରା
ଝରଝର ଝରତୀ ହୈ ନୀରକୀ ଶୁଭ୍ର ଧାରା ।
ମଧୁ ଋତୁ ସୁଷମାସେ ପୂର୍ଣ୍ଣ ବନ୍ୟସ୍ଥଳୀ ହେ
ସୁରୁଚି ସୁକବିତା କୈମୋଦଦା ମଣ୍ଡଳୀହେ,
ତ୍ରୟ ଭୁବନ ବଯାତୁ କୀର୍ତ୍ତନ କୋ ମଞ୍ଜୁ ବାଜା
ଜୟ ଜୟ ଋଷି ରୂପୀ ସଚ୍ଚିଦାନନ୍ଦ ରାଜା ।
ସଂ;ହି;-(୨୬/୨୬)(୧୭-୪-୧୯୧୫ ରୁ ଗୃହୀତ ।

<u>ଅନୁବାଦ</u>

ବିହଙ୍ଗ ଗାଏ ମଧୁର ଗାନ ଆନନ୍ଦକାରୀ
ମଳୟ ପବନ ବହେ ସ୍ନିଗ୍ଧ ସନ୍ତାପହାରୀ
ଅମୃତ ମଧୁର ଛାଇ ଶୈଳ ଶୋଭା ଉଦାର
ଝରଝର ଝରୁଥାଏ ନିର୍ଝର ଶୁଭ୍ରଧାର ।
ମଧୁଋତୁ ସୁଷମାରେ ପବିତ୍ର ବନସ୍ଥଳୀ
ସୁରୁଚି କବିତା ରସିକ କୋବିଦ ମଣ୍ଡଳୀ ।
ତିନି ଭୁବନେ ବଜାତୁ କୀର୍ତ୍ତନ ମଞ୍ଜୁ ବାଜା
ଜୟ ଜୟ ଋଷୀ ରୂପୀ ସଚ୍ଚିଦାନନ୍ଦ ରାଜା ।

(ଅନୁବାଦ-ସଂକଳକ)

# ବାଲ୍ୟସ୍ମୃତି

### ବଳଭଦ୍ର ଦେବ

ଅବିରତ ଶୀତ- ବାତ ସହଚର
ଶୁଭ୍ର ଝରଣାର ଚାଦର ଧାରୀ
ମୌକ୍ତିକ ଉଜ୍ଜଳ ଶୀକରେ ଯାହାର
ଭାଲେ ଇନ୍ଦ୍ରଧନୁ ହୁଅଇ ବାରି ।
ଘନକୃଷ୍ଣଶିଳା ସୋପାନେ ଶିଖରୁ
ସଲିଳ ଯାହାର ପଡଇ ଗଡି
ଶିଳେ ଅସମାଳେ କଚାଡି ଶିର ଯେ
ସର୍ବଦା ଛାଡଇ ଭୀଷଣ ରଡି ।

ସେ ପ୍ରଧାନପାଟ ଜଳକଣା ସ୍ନାତ
ଚାରଦ୍ରୁମ ଅଟ୍ଟାଳିକା ନିବାସୀ
ପଞ୍ଚଖଣ୍ଡୀଙ୍କର ଶୀ ଚରଣ ତଳେ
ସଭୟେ ଶରଣ ପଶିଲେ ଆସି ।
ବିଶାଳ କେଦିନ୍ତା ପଦ ପ୍ରଦେଶରେ
ସେଦିନୁ ପ୍ରସିଦ୍ଧ ଏ ଦେବଗଡ
ସୁରମ୍ୟ ଅଟ୍ଟାଳି ମାଳେ ମଣ୍ଡି ମୌଳି
ଉନ୍ନତି ସୋପାନେ ଥୋଇଲା ଗୋଡ ।

**********************

"ବାଲ୍ୟ ସ୍ମୃତି" ୧୯୩୨ କାବ୍ୟର ଅଂଶ ବିଶେଷ ।

---

# ବସନ୍ତ ନିବାସ

### ସୁଲୋଚନା ଦେଈ ।

ପ୍ରକୃତି ଲଳନା ନିତ୍ୟ ନବ ବେଶେ
କରୁଅଛି ମୋଦେ ହାସ
ତାପି-ଜନ-ତାପ କ୍ଷଣକେ ନିମନ୍ତେ
ହୃଦରୁ କରେ ବିନାଶ ।
ଶିଖରୀ ଶରୀରେ ଇଙ୍ଗିତେ ଡାକଇ
ପାନ୍ଥ ଜନେ ଆସ ଆସ

ପ୍ରଧାନ ପ୍ରପାତ ଦୃଶ୍ୟ ହରୁଅଛି
ଭାବୁକ ଜନ ମାନସ ।
ଗଙ୍ଗବଂଶୀ ଦେବ ଦୁର୍ଗ ରାଜାଙ୍କର
କୀର୍ତ୍ତି କରେ ପ୍ରକାଶ,
ଏହି ସେ ବସନ୍ତ- ନିବାଶ,ବସନ୍ତ-
ବାସ,ବସନ୍ତ ନିବାସ ।

* କବିଙ୍କ "ଚିତ୍ତ ବିକାଶ"(୧୯୨୭) ପୁସ୍ତକରୁ ଏ କବିତା ଗୃହୀତ ।

ଶୈଳ ସୁନ୍ଦରୀଙ୍କ ଅଙ୍କଗତ ଆନନ୍ଦ-ନିକେତନ "ବସନ୍ତ-ନିବାସ"ର ପ୍ରଥମ ଦର୍ଶନରେ ବାସ୍ତବିକ ଶରୀର ରୋମାଞ୍ଚିତ ଏବଂ ହୃଦୟ ଓ ମନ ଅପୂର୍ବ ଆନନ୍ଦରେ ପରିପୂର୍ଣ୍ଣ ହୋଇ ଉଠିବା ବିଚିତ୍ର ନୁହେ । ବାମଣ୍ଡାଧୀଶ ସଚ୍ଚିଦାନନ୍ଦ ଏଥିରେ ବହୁମୁଦ୍ରା ବ୍ୟୟ କରି ସର୍ବଶୋଭାମୟ କରିଥିଲେହେଁ ଏଭଳି ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟରେ ଏହାକୁ ରଚନା କରି ପ୍ରକୃତ ପସନ୍ଦର ପରିଚୟ ଦେଇଅଛନ୍ତି । ଶ୍ୱେତକୃଷ୍ଣପ୍ରସ୍ତରଖଚିତ ହର୍ମ୍ୟତଳ ଏବଂ ବିଦ୍ୟୁତାଲୋକରେ ଭୂଷିତ ହୋଇ ମନୁଷ୍ୟ ହସ୍ତର କୀର୍ତ୍ତି-ପରାକାଷ୍ଠା ସୂଚିତ କରୁଥିଲେହେଁ ପର୍ବତ ଶ୍ରେଣୀର ଗାଢ ନୀଳିମା ମଧ୍ୟରୁ ସରୋବରରେ ଶ୍ୱେତପଦ୍ମ ପ୍ରାୟ ଏହା ଦୂରରୁ ସମସ୍ତଙ୍କ ନୟନ ଆକର୍ଷଣ କରୁଅଛି । ପ୍ରଧାନପାଟ ପ୍ରପାତର ଜଳଧାରା ଅଦୂରରେ ନିରନ୍ତର ମନ୍ଦ୍ର ନାଦରେ ଉପରରୁ ଖସିବା ଦୃଶ୍ୟ ଏହା ସହିତ ମିଳିତ ହୋଇ ଦୃଶ୍ୟ ସମନ୍ୱୟରେ ଅଦ୍ୱିତୀୟ ହୋଇଅଛି,ଏହା ବୋଲିବା ବାହୁଲ୍ୟ ମାତ୍ର । ଅଦୂରର ଆଉ ଗୋଟିଏ ଶୈଳ ଉପରେ ବସନ୍ତ ନିବାସ ଅନ୍ତର୍ଗତ "ଲୁଳିତ ବାସନ୍ତ"ଭବନଟି ସଚ୍ଚିଦାନନ୍ଦଙ୍କ ଅପୂର୍ବ ପସନ୍ଦର ଅନ୍ୟ ଗୋଟିଏ ନିଦର୍ଶନ । ମୃଦୁଳ ବସନ୍ତାନିଳଦ୍ୱାରା ଏ ସ୍ଥାନଟି ସର୍ବଦା କମ୍ପିତ ହେଉଥିବାରୁ ଅଳଙ୍କାରିକ ରାଜା ମହୋଦୟ ଏହାର ନାମ "ଲୁଳିତ ବାସନ୍ତ"ରଖିଅଛନ୍ତି । (ବସନ୍ତ ନିବାସରେ ସଂଧ୍ୟା-ଉଜ୍ଜ୍ୱଳ ପ୍ରକୃତି= ଶଶି ଭୂଷଣ ରାୟ ।)

# ବସନ୍ତ ନିବାଶେ

କୃଷ୍ଣ ଚନ୍ଦ୍ର କର ।

ଛବିଳ ଉତ୍କଳର ଛବିର ହାଟ
ପ୍ରକୃତି-ପ୍ରିୟ-ସଖୀ ପ୍ରଧାନପାଟ
କବି-ନୟନ-ଶିରୀ ଗିରି ତନୁଜା,
କବି ବିହୁନେ ଆଜି କାହିଁ ତୋ ପୂଜା ଗୋ !
ଶଇଳ-ସାନୁ-ଶିରୀ ଅଟେ-ପଟ
ଭାବ ପସରା ତୋର ଟଳ୍ପଳ ତଟ,
ହୀରକ ହାର ସରି ଶୀକର ରାଶି
ପରାଣ-ତରୀ ଚଢ଼ି ଯିବକି ଭାସି ଗୋ!
ଏକ ଧିଆନେ ଚାହିଁ- ତରୁଣୀ ସମ
ଆଦରେ ତାକୁ କିବା ପାଟି ମରମ !
କି ଶିରୀ ଦେଖି ମୋର ଗଲୁ ତୁ ଭଳି
ନୁହେଁତ ଅଭାଗା ମୁଁ ତୋ ସଖୀଭଳି ଗୋ!
ଦେଖଇ ଆଜି ତୋର ସୁଚାରୁ ଛବି
ଚକିତ ସ୍ଥିର ନେତ୍ରେ ଏ ଦୀନ କବି
ଝଟକେ ଆଜି ସେହି ବେଶ ମୋହନ
ଯେ ବେଶେ ଥିଲୁ ମୋହି କବି-ନୟନ ଗୋ!
ସ୍ଥିର ଯଉବନା ଗୋ ସୁଷମା ରାଣୀ!
ସୁଷମ କଣ୍ଠେ ତୋର ରୂପ କାହାଣୀ
ଗାଇ ଥିଲେ ଗୋ କବି ଅମର ସ୍ୱରେ,
ସେ ଦିନ ଆଉ କିବା ଆସିବ ଥରେ ଗୋ!

ସକଳ- ଶୋଭା-ନିଧି ତୋ ଚାରୁ ଚୀର
ମୁଖରୁ ଥିଲା ଗାନେ ଦିନେ କବିର
ସପନ ପରି ଆଜି ହୁଏ ପରତେ
ନାହାନ୍ତି(୧) ପ୍ରିୟ ତୋର ଆଉ ମରତେ ଗୋ !
ପୂରବ କାନ୍ତି ତୋର ପୂରୁବ ହାସ
(୨) ବସନ୍ତ-ନିବାସେ ତୋ ଆଦର ଭାଷ
ପୂରବ ବେଶ ଭୂଷା ଯୌବନ-ଶିରୀ
ସବୁତ ଅଛି ଆଜି ପୂରୁବ ପରି ଗୋ!
ରହିଛି ସିନା ସବୁ ପୂରୁବ ପରି
କାହାନ୍ତି ମାତର ତୋ ରୂପ-ପୂଜାରୀ ?
ଝୁରୁଛୁ ବସି ଯାଙ୍କୁ ବିଜନ ସ୍ଥଳେ
ଭସାଇ ସାର ତନୁ ଲୋତକ-ଜଳେ ଗୋ!
ନାହାନ୍ତି(୩) କବିଗୁରୁ, ଭାବ ପ୍ରତିମା !
ବୁଝିବ ଆଉ କେ ତୋ ଭାବ-ମହିମା !
ଅଭାବେ ବୀଣାପାଣି ଭାଳନ୍ତି ଆଜି
ବିଭବ ବେଣୁ ତୋର ପଡିଛି ଭାଜି ଗୋ!
ରସିକ ଥିଲେ କେତେ ତୋ ପାଶେ ଘେରି
ସତେକି ରୂପସି ! ତା ଆସିବ ଫେରି ?
ହେବ ତୋ ଚୀର ପୁଣି କବିତା ମୟ
ସତେ କି ହେବ ସଖି ! ଭାଗ୍ୟ ଉଦୟ ଗୋ!

(ଦେବ ଦୁର୍ଗ-ତା ୨୫-୨-୧୯୩୧).

୧-ସୁଢ଼ଳ,ସଚ୍ଚିଦାନନ୍ଦ ପ୍ରଭୃତିଙ୍କ ପରେ 'ପ୍ରଧାନ ପାଟ'ର ସୁଷମାଭକ୍ତ,କବି,ଲେଖକ ଆଉ ନାହାନ୍ତି ।
୨-ଅତିଥି ବା ପଣ୍ଡିତ, କବି ପ୍ରଭୃତି ଏହି 'ବସନ୍ତ ନିବାସ'ରେ ଅବସ୍ଥାନ କରିବା ପାଇଁ ରାଜାଙ୍କ କର୍ତ୍ତୃକ ସାଦରରେ. ଅଭ୍ୟର୍ଥିତ ହେଉଥିଲେ ।
୩-ରାଧାନାଥଏବଂ ତଦୀୟ ଅନୁସାରୀ ମଧୁସୂଦନ,ଫକୀରମୋହନ,ନନ୍ଦକିଶୋର ପ୍ରଭୃତି ଉତ୍କଳର ସ୍ୱନାମଧନ୍ୟ କବିବୃନ୍ଦ ଏଠାରେ ଲକ୍ଷ୍ୟ ।

"ପ୍ରପାତ ଜୀବନେ ଧୌତ ସରସ ଉର୍ବରା
ପୂଜନୀୟା ଅଟେ ଏହି ପୁଣ୍ୟ ବସୁନ୍ଧରା "

( ଦେବଦୁର୍ଗ - ଲୋଚନ ପ୍ରସାଦ ପାଣ୍ଡେୟ
୧୭-୬-୧୯୧୧)

# ପ୍ରଧାନ ପ୍ରପାତ

**ବାଣେଶ୍ୱର ପ୍ରସାଦ ମହାନ୍ତି**

ଶୁଣି ତୃଷ୍ଣ ତୋରନାମ ରେ ପ୍ରପାତ ବର
ଯେଉଁ ରାଜ୍ୟେ ତୁହିଁଝରୁ ସେ ରାଜ୍ୟେ ମୋ ଘର ।
ଦୁଃଖ କଥା , ଦେଖିନାହିଁ କେବେ ଥରେ ତୋତେ
ମାତ୍ର ତୋ ଅରୂପରୂପ ମୋ କଳ୍ପନା ନେତ୍ରେ ।
ଆଜି କେତେ ରଙ୍ଗେ ନାଚି ହଲି ଖେଳିଯାଏ
ଅପୂର୍ବ ପୁଲକ ରସେ ହୃଦପୁଲକାଏ ।
ପତ୍ର ପୁଷ୍ପ ବିଭୂଷିତ ଉତ୍ତୁଙ୍ଗ ଶିଖରୁ
ଉଚ୍ଚାବାଚ ମାର୍ଗଦେଇ ଖରେ ଅବତରୁ ।
ରଜତ ଲହରୀ ଲୀଳା ଭୃଗୁ ପ୍ରସ୍ଥବାସୀ
ଦେବାଦେବୀ ଦେଖୁଥିବେ ମନ୍ଦେ ହସିହସି ।
ଦୁଇପାର୍ଶ୍ୱେଇପା ଝୁଲୁଥିବ ଫୁଲ ପୁଷ୍ପାବଳୀ
ଉଠୁଥିବ ମଞ୍ଜୁକୁଞ୍ଜୁ ବିହଙ୍ଗ କାକଳି ।
ମୃଦୁମନ୍ଦ ଗନ୍ଧବହ କାନନେ ସଞ୍ଚରି
ଉପୁଜାଇ ବୀଣା–ବାଣୀ ଶ୍ରୁତି ପ୍ରୀତିକରି ।
ତଷ୍ଟଳେ ଆନ୍ଦୋଳି ତୋର ଶୁଭ୍ର କଳେବର
ସିଞ୍ଚୁଥିବ ଚତୁର୍ଦ୍ଦିଶୀ ମୌକ୍ତିକ ଶୀକର ।
ସେ ଶୀକରେ ସୁପ୍ରସନ୍ନ କୁରଙ୍ଗ କୁରଙ୍ଗୀ
ନିମୁଉଛେ ଗମ୍ଭ ଗମ୍ଭ କରିଗ୍ରୀବା ଭଙ୍ଗୀ ।
କିବା ହର୍ଷେ ଭୁଂଜୁଥିବେ ହେମ କିଶଳୟ
ଝୁଲୁଥିବ ତାଙ୍କ ନେତ୍ର ବିଦ୍ୟୁ ପ୍ରଭାମୟ ।
ରଚୁଥିବ ତଣ୍ଡ ସ୍ରୋତେ ରବି ପୂର୍ଣ୍ଣକର-
ଇନ୍ଦ୍ରଧନୁ ବର୍ଣ୍ଣୋତ୍ସବ ମନ ମୋହକର ।

ବିଚିତ୍ରାଙ୍ଗ ପକ୍ଷିପନ୍ତି କଳରବ କରି
କ୍ରୀଡୁଥିବେ ତୋର ନୀରେ ସାନନ୍ଦେ ସନ୍ତରି ।
ଗଦଗଦେ ଝରୁଥିବୁ ମନ୍ଦା ପ୍ରଭାପୁରେ
ବିଲୋଡିତ ଗିରିହ୍ରଦେ ପ୍ରବଳ ବେଗରେ ।
ଶ୍ୱେତପୀତ ରକ୍ତ ଅଂବୁବହ ପ୍ରତିବିଂବ
ପଡୁଥିବ ତୋ ପୟସି ପ୍ରକାଶି କଦମ୍ବ ।
ନିଶୀଥେ ତାରକାମାନେ ଏଠି ବ୍ୟୋମେ ଶଶୀ
ଥରୁଥିବ ତୋ ଅନ୍ତରେ ପ୍ରକୃତି ଉଲ୍ଲସି ।
ତୋ ଜଳ ଜୀବନଲଭି ଦେବଦୁର୍ଗ ବାସୀ
ସୁଖଶାନ୍ତି ଆନନ୍ଦରେ ଥିବେ ଦିବାନିଶି ।
ଅବଲୋକି ସେ ସ୍ୱର୍ଗୀୟ ଅନୂପ ମୂରତି
ଫୁଟୁଥିବ ତାଙ୍କ ହୃଦେ ପୂତ ପ୍ରେମଭକ୍ତି ।
ଅହଃରହ ଏହି ରୂପେ ଶୋଭାଦେବୀ ବସି
ଶୋଭାଯନ୍ତ ଚାଲୁଥିବେ ସସ୍ମିତେ ରହସି ।
ଗାଉଥିବେ ବୀଣାଧରି ଅମାୟ ସଙ୍ଗୀତ
ତୋର ବକ୍ଷ ହେଉଥିବ ମନ୍ଦ୍ରେ ଝଙ୍କାରିତ ।
ଅଧମୁଁ ଅଧମ ମୁଁ କି ତୋ ବର୍ଣ୍ଣେନେକ୍ଷମ ?
ଗାଇଗଲି ଦୁଇପଦ ବଳିବାରୁ ମନ ।
ମହତକ୍ଷମା ପ୍ରଧାନ ପ୍ରପାତ ଜଗତେ
ତେଣୁ ନିଶ୍ଚେ ଦୟାବହି କ୍ଷମିବୁ ତୁ ମୋତେ ।
ନମାମି ନମାମି ଦେବ ପ୍ରଧାନ ପ୍ରପାତ
ବାମଣ୍ଡା ମଣ୍ଡଳକର ଶ୍ରାଦ୍ଧ ଶିକ୍ଷାସ୍ନାତ

(*ସଂବଲପୁର ହିତୈଷିଣୀ( ୨୪/୩୬) ତା-୫-୭-୧୯୧୩ ରୁ ଉଦ୍ଧୃତ)

ଏ ଅମଳ ପଦ୍ମେ କମଳା ବାଣୀ ବସିବେ ବେନି
ଶିତାଶିତ ଭେଦ ସପନ୍ନୀ-ବାଦ ମନେ ନ ଘେନି
ଏ ମହା ମେଳନୁ ସମ୍ଭୂତ ହେବ ଉତ୍କଳ ଭାଷା
ଉତ୍କଳ ଭାରତୀୟ ପ୍ରକାଶ-ପ୍ରତିମଣ ତା ଉଷା
ଉପାଧି-ଦୀଧିତି ପ୍ରଦୀପ୍ତ ଏହି ବଂଶ ସୁଧାଂଶୁ
ଦୀପିବ ଓଡିଆ ଶର୍ବରୀ ବିନା ସାମ୍ରାଜ୍ୟେ ପ୍ରାଂଶୁ
ପ୍ରଧାନପାଟର ପ୍ରପାତ-ତଟେ କଟକ ବାଟୀ
ଗଢିବେ ବାମଣ୍ଡା ମଘବା କାହିଁ ହାଟକ ମାଟି ।

(ପଦ୍ମାବତୀ ପରିଣୟ-ଭାଗିରଥି ରଥ ପୃ-୯୩)

# ।। ପ୍ରଧାନ-ପାଟ ଜଳ ପ୍ରପାତ ।।

ଗିରିଧାରୀ ନନ୍ଦ ।

କୈଁଦତା-ପ୍ରଧାନପାଟ ପର୍ବତ ଦେହରୁ
ପଡଇ ଜଳ ପ୍ରପାତ ବହୁତ ଉଚ୍ଚରୁ ।
ପ୍ରଧାନପାଟ ପର୍ବତ ଶିଖର ଦେଶରୁ;
ସତୁରୀ ହାତ ଉଚ୍ଚତା ଦିଶଇ ଭୂମିରୁ ।
ଝରଝର ହୋଇ ପାଣି ହୁଅଇ ନିର୍ଗତ
ତିନିଧାରେ ବହେ ପାଣି ହୋଇ ଆନନ୍ଦିତ ।
ଗ୍ରୀଷମ,ବରଷା,ଶୀତ ସାରା ବରଷରେ;
ନ ଶୁଖଇ ପାଣିସ୍ରୋତ ସଦାବେଳେ ଝରେ ।
ଗ୍ରୀଷମେ ଲାଗଇ ଥଣ୍ଡା ହୁଏ ବହୁ ଶୀତ
ଶୀତ ନ ବାଧଇ ଶୀତେ ଲାଗେ ଉଲ୍ଲସିତ ।
ଅପରୂପ ମୂର୍ତ୍ତି ଧରେ ବସନ୍ତ ଋତୁରେ;
ବିଚିତ୍ର ଶୋଭା-ପସରା ଜନମନ ହରେ ।
କୋକିଳ ପଞ୍ଚମ ତାନେ ବସି କରେ ଗାନ
ବସନ୍ତ ଆଗମ ବାର୍ତ୍ତା କରଇ କୂଜନ ।
ପ୍ରପାତ ପାଖେ ଅଛଇ ବହୁ ବୃକ୍ଷ ରାଜି
ବଢିଛନ୍ତି ମହାନନ୍ଦେ ମନେ ଗର୍ବ ହେଜି ।
ବହି ଆସଇ ପ୍ରବାହ ଜଳ-ପ୍ରପାତର
ଝରଣା ଆକାରେ ବହେ ମନ ମୁଗ୍ଧକର ।
ସାହିତ୍ୟ ବିନୋଦ କବି ସଚ୍ଚିଦା ରାଜନ ;
ଦୟାବନ୍ତ,ଶ୍ରଦ୍ଧାବନ୍ତ ପ୍ରକୃତି ପୂଜନ ।
ନିର୍ମାଣିଛନ୍ତି ପ୍ରପାତ ନିକଟେ ସଦନ
ବସନ୍ତ ନିବାସ ନାମେ ଅଟଇ ମହାନ ।
ଅନ୍ୟ ଦିଗେ ପ୍ରପାତର ଲଳିତ ବସନ୍ତ
ଦୂରରୁ ଦର୍ଶକ ମନ କରଇ ମୋହିତ ।
ପ୍ରପାତ ଅନତି ଦୂରେ ରମ୍ୟ ଉପବନ
ବିଖ୍ୟାତ ଉତ୍କଳଦେଶେ ସ୍ୱର୍ଗର ନନ୍ଦନ ।
ପ୍ରଜାପ୍ରିୟ ଗୁଣବନ୍ତ ବାସୁଦେବ ରାଜା
ଉଦ୍ୟାନ ତୟାରି ଆଜି ପାଉଛନ୍ତି ପୂଜା ।
ସ୍ୱର୍ଗ ନନ୍ଦନ କାନନ ବୋଲି ପ୍ରତେ ହୁଏ
ନାନା ଜାତି ସୁମନରେ ସଦା ଶୋଭ ପାଏ ।
ବସନ୍ତ-ନିବାସ ବଡ ବଗିଚା ପ୍ରପାତ
ଜନନୀ ବାମଣ୍ଡା ରାଜ୍ୟ ଲଭିଅଛି ଖ୍ୟାତ ।
ଜନନୀ ଗୁଣ-ବର୍ଦ୍ଧକ ପ୍ରକୃତି ରଞ୍ଜନ
କରି ପ୍ରସିଦ୍ଧି ଲଭିଛୁ ବାରି କରି ଦାନ ।
ପାଣିକଳ ରାଜାଙ୍କର ଅକ୍ଷୟ କୀରତି
ଦେବଦୁର୍ଗବାସୀ ମୁଦେ ସମୟ ହରନ୍ତି ।
ବିଜୁଳି-ବତୀ ଚାଳିତ ଏ ପାଣି ଯୋଗରେ
ଯାମିନୀ ଦିଶେ ଦିବସେ ଜନ ମନ ହରେ ।
ଦର୍ଶକ ନିକଟ ତୋର କରିଲେ ଗମନ
ମୋହୁ ମନ ଦର୍ଶକର ନହୋଇ ବିମନ ।
କି ମହାନ ଶିକ୍ଷା ଦେଉ ଦର୍ଶକ ମନରେ
ବିହରିବାକୁ ଇଚ୍ଛନ୍ତି ତୋର ରମ୍ୟ ତୀରେ ।
ଭୁଲିଯାଇ ସଂସାରର ଯାବତ କଷଣ
ନିର୍ମାଣି ତୋହର କୂଳେ ରମ୍ୟନିକେତନ ।
ଧନ୍ୟ ମହିମା ତୋହର ହେ ଜଳପ୍ରପାତ
କ୍ଷୁଦ୍ରାଦପି କ୍ଷୁଦ୍ର ହୋଇ ଲଭିଅଛ ଖ୍ୟାତ ।
ତୋର ରମ୍ୟ ତୀରେ ବିତୁ ଏ ସାରା ଜୀବନ
ତୋହରି ପରଶେ ଲଭେ ଶାନ୍ତି ନିକେତନ ।
ଭାବିଥିଲି ତୋ କୋଳରେ ନିର୍ମାଣି ସଦନ
କରିବି ଆନନ୍ଦେ ବାସ ଉତର ଜୀବନ ।
ସଂସାର ଗହଳେ ମୋର ସଂପୂର୍ଣ୍ଣ ଦୁରାଶା
ବୃଥା ହୃଦୟରେ କିପାଁ ପୋଷିବି ଏ ଆଶା ।
ନେଉଛି ମେଲାଣି ଆଜି ପ୍ରପାତ ତୋ ଠାରୁ
ଆସିବି ଦର୍ଶନେ ତୋର ମୋହର ଗୃହରୁ ।
ଧନ୍ୟ ଜଗତ ସ୍ରଷ୍ଟାଙ୍କ ମହିମା ଅପାର
ଘୋଷୁଛି ମନ୍ଦ୍ର ଧ୍ୱନିରେ ପ୍ରପାତ ନିକର ।
କି ଆଶ୍ଚର୍ଯ୍ୟ ସୃଷ୍ଟି ତୋର ହେ ଜଗତ ସାଇଁ
ଭାବି ଭାବି ହୃଦ ମୋର ହୋଇଯାଏ ବାଇ ।

ରେଙ୍ଗାଲୀ,ଦେବଗଡ

* କବିଙ୍କ "ପୁଷ୍ପମାଳା" କବିତା ସଂକଳନରୁ ଗୃହୀତ । କବିତାଟି ୧୯୪୨ରେ ରଚିତ ।

ହଠାତ୍ ଦେଖିଲେ ବୋଧହେବ, ଯେମନ୍ତ ଲକ୍ଷ ଲକ୍ଷ ହୀରକ ଖଣ୍ଡ ପୁଞ୍ଜୀଭୂତ ହୋଇ ସ୍ୱର୍ଗରୁ ଖସୁଅଛି । ପ୍ରପାତର ଶିରୋଦେଶରେ ବନ୍ଧୁର ଶିଳାର ପ୍ରତିଘାତ ନିନସ୍ୱନକଳବିନ୍ଦୁ ଇତସ୍ତତଃ ପ୍ରକ୍ଷିପ୍ତ ହୋଇ ମୁକ୍ତା ବୃଷ୍ଟି ହେଲା ପ୍ରାୟ ବୋଧ ହେଉଅଛି ।ଜଳର ଶୀକରରେ ଇନ୍ଦ୍ରଧନୁ ନୃତ୍ୟ କରୁଅଛି ।ଘୋରଅରଣ୍ୟ ଏବଂ ଗିରିକନ୍ଦର ସୁଲଭ ନିର୍ଜନତାରେ ଏହି ଅପରା ଦୃଶ୍ୟ ଦେଖିଲେ ମନ କିପରି ହୁଏ,ତାହା ଯେବେ ତୁମ୍ଭର ଅନୁଭବ କରିବାର ଇଚ୍ଛାଥାଏ,ଶ୍ରମ ସ୍ୱୀକାର ପୂର୍ବକ ଥରେ ପ୍ରଧାନପାଟ ଦେଖିଆସ ।

(ଭ୍ରମଣକାରୀର ପତ୍ର (୧୮୮୭)-ରାଧାନାଥ)

# ପ୍ରଧାନ ପାଟ

## ଯୁଗଳ କିଶୋର ମିଶ୍ର

ଲୋକଙ୍କର କରୁ ସିନା ଚିତ୍ତ ବିନୋଦନ
ବିରସି ହୃଦୟେ କରୁ ଆଶାର ଉଦ୍ରେକ
ରସିକ ଆଖିରେ ତୁହି କାମିନୀ ସଦୃଶା
ଅବା ଆଇମା ଗପର ଭଗୀରଥ-ଗଙ୍ଗା
କିନ୍ତୁ,ଲୋ ପ୍ରଧାନପାଟ;
ଦେଖେ ଯେବେ ତୋର ରୂପ,ଗଢି ଆସୁଥିବା ଦୁଇଟି ଧାରକୁ
ଲାଗେ ମୋତେ ଯେହ୍ନେ ତୁହି ବେନି ଅଶ୍ରୁଧାର-
ମୋ ନୟନ କୋଣର।
ବସନ୍ତରେ ତୋର କୋଳର ସେ ସବୁଜିମା
କରିକି ପାରଇ କେଉଁ କବିତା ତୁଳନା
ବସନ୍ତର ଛନ୍ଦେ ଛନ୍ଦେ,ନାଚୁ ତୁହି ନବରଙ୍ଗେ
କୁଳୁକୁଳୁ ନାଦେ ଗାଇ ଯାଉ ଗୀତି ଆନନ୍ଦର।
ହୃଦୟଟା ଜଳୁଛି ଯାହାର
ସିଏ କେବେ ଆନ ସୁଖେ ହୋଇପାରେ ସୁଖୀ ?
ଦେଖି ତୋ ରୂପର ସମ୍ଭାର
ବସନ୍ତର ଆଗମନେ ମତୁଆଲା ମନ
ଜାଗେ ଈର୍ଷା ......ଚିନ୍ତା କରେ କରିଦେବି ଧ୍ୱଂସ ତୋତେ
କରିବି "ଖାଣ୍ଡବଦଗ୍ଧ "ଅର୍ଜୁନର ସମ।
ବସନ୍ତ ନିବାସ ଯହିଁ ବସନ୍ତ ଅତିଥି
କରିବାକୁ ଚର୍ଚ୍ଚାଚାର
କେଉଁ ରାଜା ସୃଷ୍ଟିକଲା ରୂପର ପ୍ରାସାଦ
ପ୍ରତିଖଣ୍ଡେ ରଚିଗଲା ବସନ୍ତର ଗୀତି
ଗୀତି ନୁହେଁ ବସନ୍ତର, ମୋର ସମାଧିର
ଜୀବନ ରାସ୍ତାର ବେନି ପାର୍ଶ୍ୱର ପ୍ରତି ଖଣ୍ଡେ
ଲେଖିଯିବି କବିତା ମୁଁ ତୋର ପାଇଁ ଜୀବନଟା ସାରା।
କହଲୋ ପ୍ରଧାନ ପାଟ..............
କରିକି ପାରିବୁ ଗର୍ବ ସେହିଦିନ
ତୋର ରୂପ ପାଇଁ ???

# ପ୍ରଧାନପାଟ

## ରାଧାମୋହନ ଗଡନାୟକ

'ନୀଳନରେ ଉଠିଥିଲା ନୀଳଗିରି 'କଉଦତା'ସାଥେ
ତଳୁ ଶ୍ୟାମ ବନରେଖା ଚାହିଁଥିଲା ସ୍ଥିରଦୃଷ୍ଟି ପାତେ
କିଏ ତୁମେ ମନ୍ଦ୍ରଗାନ ଗାଇଦେଲ ହେ ଚାରଣ କବି
ଚାହିଁଲା ଶଇଳ ଫେରି , ଫେରି ପୁଣି ଚାହିଁଲା ଅଟବୀ।
ସମୀର ଅସିଲା ପାଶେ ଛାଡିଦେଇ ପୁଷ୍ପବନ କ୍ରୀଡା
ଚାହିଁଲେ ପାଦପ ବଲ୍ଲୀ ବିଚକିତ ମୂକ ପରିଚିତା।
ମଧୁର କାକଳି ଛନ୍ଦ ହଜିଗଲା ପକ୍ଷୀ ହେଲା ତୁନି
ପଲ୍ଲବ-ଓଢଣୀ ତୋଳି ଅନାଇଲା କୁସୁମ-ତରୁଣୀ
ପ୍ରକୃତିର ରମ୍ୟ କୋଳେ କିଏ ତୁମେ ହେ ଚାରଣ କବି
ଦିବା ନିଶି ଧରି ନିତ୍ୟ କାହା ଲାଗି ଯାଉଅଛି ଦ୍ରବି ?
ପ୍ରାଣର କବିତା ତୁଳେ ଢାଳିଦେଇ ଆକୁଳତା ରାଶି
ଜୀବନ ତର୍ପଣ କରି କାହା ଲାଗି ପଡୁଅଛ ଝାସି ?
ସୌରକର ତୁଳେ ଥରେ ଦେଇ ତୁମ ରାମ ଧନୁ-ଦ୍ୟୁତି
କହିବ କି ହୃଦବାଣୀ ? ତୃପ୍ତ ହେବ ଅତିଥିର ଚିର।

('କାବ୍ୟ ନାୟିକା 'ସଂକଳନରୁ ଗୃହୀତ)

କଳ୍ପନା-କାନନ-ପିକ ହେ ମହାନୁଭବ
(ଜାତୀୟ-ସାହିତ୍ୟାଶ୍ରମ-ଦକ୍ଷ ସଂସ୍କାରକ)
କି ଗାଇବି ଜଡକଣ୍ଠେ ମହିମା ତୁମ୍ଭର,
ଗାଉଛି ପ୍ରଧାନପାଟ ଶାଶ୍ୱତ ନିନାଦେ
(କଳ୍ପଲତା-ଚିନ୍ତାମଣି ମହାନ୍ତି)

# ପ୍ରଧାନ ପାଟ

କୁଞ୍ଜ ବିହାରୀ ଦାଶ

ଝର ଝର ଝର     ବନ ମର ମର
କାକଳି ମୁଖର ମଧୁର ସଞ୍ଜ
ରଙ୍ଗ ରଚ ରଚ     ଶୈଳ ସୀମନ୍ତ
ଦିଶେ ଶିରୀମନ୍ତ ମଣ୍ଡଳେ କଞ୍ଜ ।
ମଧୁର ରୂପଶ୍ରୀ     ଗୋଧୂଳି ରୂପସୀ
ହସଇ ବିଙ୍କଣି ଶୈଳ ପରେ
ରୂପ ଅପରୂପ     ଜଳେ ଦପଦପ
ଝରେ ଥପ ଥପ ମାନସ ହରେ ।
ଆସି ଏ ପ୍ରବାସେ     ବସନ୍ତ ନିବାସେ
ଦର ଦର ହାସେ ରହିଚି ଚାହିଁ
କରି କରି ନାଟ     ପରଧାନ ପାଟ
ଜଳ ପରପାଟ ଆସଇ ଧାଇଁ ।
ପାଷାଣେ ପାଷାଣେ     ହସାଇ ସୁତାନେ
କଳ କଳ ଗାନେ ପଡଇ ଝରି
କେଉଁ ଜନମର     ମାନସ ତରଳ
ବିଳାସ–ସୁଖର ସପନ ପରି ।
ଶୈଳ ଦୁଲାଳୀ     ମୋତି ମଣି ମାଳୀ
ଗଳେ ପିନ୍ଧି ଚଳେ ଆସନ୍ତି ଅବା
ଲାଲ ଦର ଦର     ମଧୁର ଅଧର
ଫୁଲ ଜର ଜର ରୁଚିର ଗଭା ।
କଇଶୋର ଯାଇ     ଫୁଟି ଫୁଟି ନାହିଁ
ଯଉବନ କାହିଁ କୋମଳ ଅଙ୍ଗେ
ଚୁଲୁ ବଉଳଇ     କଳସର ଛଇ
ନାଚି ନାଚି କାହିଁ ରୂପ ତରଙ୍ଗେ
ମନ ନିଏ କିଣି     କରେ କିଣି କିଣି
ରୁପେଲି କିଙ୍କିଣି କୋମଳ ସ୍ୱର
ସରୁ ଅଣ୍ଟା ସତେ     ଭାଙ୍ଗିଯିବ ପଥେ
ଦେହ ଭାରେ ମତେ ଲାଗଇ ଡର ।
ପଥର ଆବାସ     ବଜର ତରାସ
ଚରଚର ରାସ ନ କର ବାଳି,
କୋମଳ ଚରଣ     ବୁଣଇ କିରଣ
ଭାଜିଯିବ ମନ ବିକଳ ଭାଳି ।

କ୍ରୀଡା ଅନୁରାଗେ     ପୀଡା ଯଦି ଲାଗେ
ବ୍ରୀଡାବତୀ ଆଗେ ମରିବି ମୁହିଁ
ଶୈଳ ରୂପସୀ     କାନନ ଉର୍ବଶୀ
କହେଗୋ ପ୍ରେୟସି,ଚରଣ ଛୁଇଁ ।
ଯୁବା ଧୈର୍ଯ୍ୟବୃତ୍ତା     ତେଜି ବାଙ୍କ ଜୂଡା
କମଳ ପାଖୁଡା ପଡଇ ଖସି
ଆଖିରେ ଆଖିରେ     ଲାଖି ଶୋଭାକିରେ
ଯାଏ ଧୀରେ ଧୀରେ ଅନ୍ତରେ ପଶି ?
ହୃଦୟ ଲହରେ     ସେ ଶୋଭା ପହଁରେ
ଶତଦଳ ଦଳେ ସଲିଳ ପରି
ଚକିତ ଚାହାଣୀ,     ଲାଜ ସଜ ଠାଣି
ହୃଦ ଦିଏ ହାଣି ଆଗୋ ଅମରି ।
କଇଦନ୍ତା ତଳେ     ଶ୍ୟାମ ଶାଳ ମାଳେ
ପାଷାଣ ପ୍ରାନ୍ତରେ ଟିମିରେ ଦେଖା
ପ୍ରଣୟ ନିଶାର     ଏ ଯେ ଅଭିସାର
ହୃଦୟ ରୁଧିର ଲେଖିବ ଏକା ।
ତୁମେ ଏକାକିନୀ     ବିଜନ ଯାମିନୀ
ହେ ଜଳରୂପିଣୀ ପ୍ରଧାନପାଟ
ଆସିଛି ମୁଁ ଏକା     ଆଗେ କାନନିକା
ଖୋଲ ଯବନିକା କରିବା ନାଟ ।
ଜଳରୁ ବାହାରି     ଆସି ସୁକୁମାରୀ
ନେଲା କରଧରି–ଲତା ଦୋଳିକି
ପ୍ରେମ ରୋମାଞ୍ଚରେ     ଦେହ ମୋର ଥରେ
ଦେଲି ବିନା ଦରେ ଜୀବନ ବିକି ।
ମାଜି ମାଜି ଶାଣେ     ଅରୁଣ କିରଣେ
ସୁବର୍ଣ୍ଣ ବରଣେ ସାଜିଛ ଶୋଭା
ପଡଇ ଛିଟ     ଅଙ୍ଗରୁ ଝଟକି
କେତେ ଯେ କେତକୀ ନୟନ ଲୋଭା ।
ଗିରି ଖୋଲେ ଖୋଲେ     ବିଜନତା କୋଳେ
ଗୋଡାଗୋଡି ଭୋଳ ହୋଇଲୁ ବେନି
ଖେଳି ଲୁଚକାଳି     ବାଦ ଲାଗେ ଭାରି
କିଏ ଦେବ କେତେ ଚୁମ୍ବନ ଘେନି ।

ବକ୍ର ପଥେ ପଥେ ଶଇଳ ସାମନ୍ତେ
ଧାଇଁ ମନ ମତେ ଆନନ୍ଦଭରେ
ଛନ ଛନ ମନ ଶରଦ କିରଣ
ଖେଳଇ ଯେସନ ତରଳ ଜଳେ ।
ଡାଳେ ଡାଳେ ଖେଳ ଉଡେ ଝାନ ଚେଳ
ହସାହସି ମେଳ ବକୁଳ ତଳେ
ରସାଳ ମଞ୍ଜରୀ କେଶେ ଦିଏ ଭରି
ବୋଳେ ଫୁଲ ଧୂଳି ଗଣ୍ଡ ଦେଶରେ ।
ଫୁଲ ଫିଙ୍ଗା ଫିଙ୍ଗି ମିଛ ରଗାରଗି
ବସ୍ତୁ ଲଗାଲଗି ହୋଇ କ୍ଷଣକେ
ରହସ୍ୟ କଥନ ଛଳରେ ଶ୍ରବଣ
ମୂଳରେ ଚୁମ୍ବନ ଭରେ କୌତୁକେ ।
'ଉହୁଁ ; 'ଉହୁଁ 'କହି ଧାଏଁ ଚାନ୍ଦମୁହିଁ
ବିଜୁଳିର ଛଇ ଖେଳାଇ ବନେ
କୋଳେ ମୁଁ ବସାଇ ଛାତିକି ଲଗାଇ
କରି ଏକ ଦୁଇ ସ୍ପନ୍ଦନ ଗଣେ ।
ଚାନ୍ଦିନୀ ତରଙ୍ଗେ ଖେଳେ କେତେ ରଙ୍ଗେ
ସଉରଭ ଅଙ୍ଗେ ଅଙ୍ଗ ମିଶାଇ
ଖୋଜଇ ମର୍ମର ଛାୟା କାନନର
ହୋଇ ତରତର ମିଳନେ ବାଇ ।
ବୁଡ଼ି ଯାଏ ଜହ୍ନ ଉଡିଯାଏ ମନ
ବାରୁଣୀ କାଞ୍ଚନ ପଣତ ପାଶେ
ପ୍ରଧାନ ପାଟର ବେଳା ବିଦାୟର
ତାରା ପ୍ରଭାତର ଭାଷଣ ହାସେ ।
"ଦେଖାଦେଇ ଥରେ ନୟନ ପଥରେ
ଅନ୍ତରେ ଅନ୍ତରେ ନାଚିବୁ ସହି,
ହୃଦୟେ ଅନ୍ଧାର ଶୁଷ୍କ ହାହାକାର
ଜଳନ୍ତା ଅଙ୍ଗାର ମାରଇ ଦହି ।"
"ପ୍ରିୟତମ କବି ହୃଦାକାଶ ରବି
କଳ୍ପି ତବ ଛବି ଦବିବି ନିତି
ଏ ଶଇଳ ତଳେ ଲେଖି ସରାଗରେ
ବୁକୁ ରକତରେ ଗାଇବି ଗୀତି ।
ଧୋଇବି ଲୋତକେ କଳପିତ ମୁଖେ
ବିଳପିତ ଦୁଃଖେ ଜଳିବ ପ୍ରାଣ
କବି ଯେ ମୋହର ମୁହିଁ କବିଙ୍କର
ମନ୍ଦାର ଫୁଲର ରଙ୍ଗ ସମାନ ।"
"ଏକ ଇନ୍ଦ୍ରମର ପୁଷ୍ପ ମନୋହର
ଏକା ଆକାଶର ତାରକା ଦୁହେଁ
ତୁମେ ହେଲେ ଜଳ ମୁଁ ତାର କମଳ
ତୁମେ ହେଲେ ଫଳ ସ୍ୱାଦୁତା ମୁଁ ହେ ।"
"ତୁମେ ହେଲେ ଶଶୀ ତହିଁ ଅଛି ପଶି
ଜୋଛନା ରୂପସୀ ମୁହିଁ ତୁମର
ମୁହିଁ ଫୁଲ ଗନ୍ଧ ତୁମେ ଫୁଲ ସଦ୍ୟ
ମୁହିଁ ଗୀତ ପଦ ତୁମେ ତା ସ୍ୱର ।"
ଉଇଁଲେଣି ରବି ସ୍ୱର୍ଣ୍ଣଧାରା ଦବି
ଦେଲାଣି ଯେ ପ୍ଲାବି ବନ ପ୍ରାନ୍ତର
କୋକିଳ କୂଜଇ ଭ୍ରମର ଗୁଞ୍ଜଇ
କମଳ ପଡଇ କୋମଳ କର ।
ବିଦାୟ ଗୋ ପ୍ରିୟା ଜଳଇ କି ନିଆଁ
ଫାଟିଯାଏ ହିଆ କେଉଁ ଆଘାତେ
ତାଳ ଅଶ୍ରୁଧାରା ନାରୀ ମୌକ୍ତି ମାଳା
କାହିଁ ମିଶିଗଲା ପାଟ ପ୍ରପାତେ ।
ଭାଜିଲା ସପନ ମେଲିଲି ନୟନ
ଛନ ଛନ ମନ କାହିଁ ସେ କାହିଁ
କଳ କଳ କଳ ଛଳ ଛଳ ଛଳ
ଝରେ ଖାଲି ଜଳ ପ୍ରେୟସୀ ନାହିଁ ।
ହୋଇ ସରି ସରି ଭଳି ଭଳି ଜରି
ରୂପାର କି ଝରି ଆସେ ଶଇଳେ ?
ଜକ ଜକ ଜ୍ୟୋତି ଝରେ ହୀରା ମୋତି
କ୍ଷଣେ ହୁଏ ପୋତି ତଳ ସଲିଳେ ।
ଇନ୍ଦ୍ର ଧନୁ-ମୟ ଜଳ ବିନ୍ଦୁ ଚୟ
ଅବା ଏ ବିଜୟ ଧ୍ୱଜା ଶୋଭାର ?
ଶୋଉଛି ଶଇଳେ ତରଙ୍ଗୀ ସତରେ
ଲସିଯାଏ ତଳେ ଅବା କାହାର ?

କୈଦନ୍ତା ସୁନ୍ଦର
ନା ଘନ ଶାଳବଣ
ବସନ୍ତ ନିବାସ ନା
ରାଜବ୍ରର ଲୋହିତ ଅହଂକାର ?

# ନମୋ ଜନ୍ମଭୂମି ଦେବଗଡ ବାମଣ୍ଡା ନମଃ

ଆଶା କୁମାରୀ ଦେବୀ

ଅମ୍ଳାନ ପ୍ରସୂନ ନୁହଇ ସେ ମ୍ଳାନ ଉଜ୍ଜ୍ୱଳ ଦିଶେ ଉଜ୍ଜ୍ୱଳ
ବସନ୍ତ ନିବାସ ଦ୍ରୁମ ବଲ୍ଲରୀରେ ବିକଶେ ହୋଇ ମଞ୍ଜୁଳ ।
ପ୍ରଧାନ ପ୍ରପାତ ପର୍ବତ ଶିଖରୁ ଦେବୀ ବର କୃପାମୃତ
ସାତକୁଣ୍ଡ ନୀର ଖସିପଡି ଅଚ୍ୟୁତ ଚାରୁଧାରା ବିଭକ୍ତ ।
ମେରୁ କନ୍ଦରରୁ ଗଙ୍ଗୋଦକ ପରି ଚୂର୍ଣ୍ଣି ଚୂର୍ଣ୍ଣି ହୀରାଖଣ୍ଡ
ନିର୍ଝରିଣୀ ମହାରାଣୀ ଅବତରି ପୁଞ୍ଜୀକୃତ ନିମ୍ନ କୁଣ୍ଡ ।
ଜଳକଳ ଦ୍ୱାରା ଦେବଗଡବାସୀ କରନ୍ତି ସେ ଜଳ ପାନ
ଧନ୍ୟ ଜନ୍ମଭୂମି ନମସ୍ୟ ତୁମ୍ଭର ଏ ସୁତ ବରେଣ୍ୟ ।
ଜୟ ପଞ୍ଚଖଣ୍ଡା ଜୟଗିରି ଗଙ୍ଗା ନଦୀ ମା ପ୍ରଧାନପାଟ
ଛତ୍ରାକୃତି ଶୃଙ୍ଗେ ମଧୁପିଇ ମଧୁମକ୍ଷିକା କରନ୍ତି ନାଟ ।
ଜୟ ଗୋବର୍ଦ୍ଧନ ଗିରିଧାରୀ କୃଷ୍ଣ ଜୟ ପାନାକେଶ ଶିବ
ବିହାର ଆରାମ ବିଚିତ୍ର ବାଟିକା ଏ ମର୍ତ୍ତ୍ୟେ ଦେବ ଦୁର୍ଲ୍ଲଭ ।

(କାବ୍ୟକଳାବତୀ ଓ ସାହିତ୍ୟ ପ୍ରବୀଣା ଆଶା କୁମାରୀ ଗ୍ରନ୍ଥାବଳୀରୁ)

---

ପ୍ରଧାନପାଟ (ପ୍ରପାତ) ନିକଟରେ ଉପସ୍ଥିତ ହୋଇ ଆମ୍ଭେମାନେ ଅଭୂତପୂର୍ବ ଭାବରେ ନିମଗ୍ନ ହେଲୁ । ସେ ଦୃଶ୍ୟରୁ ଚକ୍ଷୁ ଟଳିଲା ନାହିଁ ।ସ୍ଫଟିକ ତୁଲ୍ୟ ଜଳଧାରା ମହାବେଗରେ ପ୍ରାୟ ୨୦୦ ଫୁଟ ଉଚ୍ଚସ୍ଥାନରୁ ନିପତୀତ ହେଉଅଛି,ଜଳ ପତନର ଝର୍ଝର ନିନାଦରେ ଶ୍ରବଣ ବଧିର ହୋଇ ଯାଉଅଛି ,ନିମ୍ନ ଦେଶରେ ୪/୫ ହସ୍ତ ପରିମିତ ଜଳରାଶି ଭେଦ କରି ପ୍ରସ୍ତରମୟ ଭୂମି ଦୃଷ୍ଟ ହେଉ ଅଛି ।ଆମ୍ଭେମାନେ ସୂର୍ଯ୍ୟତାପରେ ଶ୍ରାନ୍ତ ହୋଇ ପ୍ରପାତ ନିକଟରେ ଉପସ୍ଥିତ ହୋଇଥିଲୁଁ । ଅଳ୍ପକ୍ଷଣ ମଧ୍ୟରେ ଶୀତ ଅନୁଭୂତ ହେଲା ।ପ୍ରପାତ ଜଳରେ ସ୍ନାନ କରିବା ପାଇଁ ଅନେକ ଆମ୍ଭମାନଙ୍କୁ ନିଷେଧ କରିଥିଲେ ମାତ୍ର ଏପରି ସୁଖକର ଧାରା ସ୍ନାନରେ ଲୋଭଟା ସହଜରେ ସମ୍ବରଣ କରି ହେଲାନାହିଁ ।ଊର୍ଦ୍ଧ୍ୱରେ ନିପତିତ ସ୍ୱଚ୍ଛ ସୁଶୀତଳ ବାରିଧାରାତଳେ ମସ୍ତକ ରଖିବା ଯେ କି ଆରାମ ଓ ଶାନ୍ତି ଅନୁଭବ କଲୁଁ ତାହା ବ୍ୟକ୍ତ କରିବା ଅସମ୍ଭବ । ସ୍ନାନାନ୍ତେ ଉପାସନାରେ ପ୍ରବୃତ୍ତ ହେଲୁ । ଆଜି ଆଉ ଉଦ୍‌ବୋଧନର ପ୍ରୟୋଜନ ହେଲାନାହିଁ-ବିଭୁକୃପା ଓ ପ୍ରେମର ପ୍ରତ୍ୟକ୍ଷ ନିଦର୍ଶନ ସମ୍ମୁଖରେ ଦେଖି ପ୍ରାଣ ସ୍ୱତଃଉଦ୍‌ବୁଦ୍ଧ ହୋଇ ରହିଥିଲା । ସେ ଉପାସନାର ମଧୁରତା ଓ ଭାବର ଗଭୀରତା ବର୍ଣ୍ଣନ କରିବାକୁ ମନୁଷ୍ୟ ଭାଷା ଅକ୍ଷମ । ହୃଦୟର ଦ୍ୱାର ସଂପୂର୍ଣ୍ଣ ଫିଟିଗଲା । ଭିତର ବାହାର ଭେଦ କିଛି ରହିଲା ନାହିଁ । କବି ଏବଂ ଭାବୁକମାନେ ଏ ଦୃଶ୍ୟର ମୂଲ୍ୟ ବୁଝନ୍ତି । ସେ ସମସ୍ତ ଅନୁଭବ ବର୍ଣ୍ଣନୀୟ ନୁହେଁ,ଏଠାରେ ଏତିକି କହି ନିରସ୍ତ ହେଉଅଛି।

(ଭ୍ରମଣ ବୃତ୍ତାନ୍ତ-ସଂବଲପୁର ହିତୈଷିଣୀ ୭/୨୩ ତା-୬-୧୧-୧୮୯୫-ବିଶ୍ୱନାଥ କର)

ଏବେ ଫେରିବା
ପରି କଥାକୁ
ରୂପ ରାଇଜର ସୃଷ୍ଟିକୁ
ଏବେ ଫେରିବା ପ୍ରଧାନ ପାଟକୁ ।

# "ପ୍ରଧାନ ପାଟ"

ମଧୁ ସୂଦନ ଗୁରୁ।

ହେ ପ୍ରଧାନ ପାଟ।
ପ୍ରକୃତିର ଆଲେଖ୍ୟ ମନ୍ଦିର

କବି କଳ୍ପନାର ହେ ଉଜ୍ଜଳ ରେଖା।
ହିମାଦ୍ରିର୍ ସ୍ରୋତସ୍ୱିନୀ
ହେ ଦେବୀ ଜାହ୍ନବୀ
ରୁଷ୍ଟ କିବା ଜଟା ଜୁଟ ଜୁଡ଼ା ବନ୍ଧେ
ଉଛଳ ଚରଣ ଚାଲି ଧାଇଁଛକି ରହିବାକୁ
ଗିରିବର ଅଭୟ ଚରଣେ
ଅନାଦି ଅନନ୍ତକାଳୁ।

ଅତୀତର ଇତିହାସ ଉବର ବିଳାସ
ଉବିଚବ୍ୟ ଦର୍ଶନେଛୁ ପରିବର୍ତ୍ତନର
ତମେତ ଦେଖିଛ ସବୁ
କହ କଳନାଦେ ।
କେ ରଚିଲା ବସନ୍ତ ନିବାସ
ପ୍ରକୃତିର କେଳିଗୃହ
'ସ'କାରର ଭେଦେ ନିବାଶ ନିବାଷ
କେ ରଚିଲା ପ୍ରମୋଦ ଉଦ୍ୟାନ ?

କାହିଁ ସେହି ଧାତା
ଦେବ ଶ୍ରୀ ସୁଢଳ ଦେବ ତ୍ରିଭୁବନ
ଗଙ୍ଗବଂଶ ଅବତଂଶ ପୁରୋଧା ଆପଣ।
ଭ୍ରମେ ଅବା ଶଚୀପତି ସୁରରାଜ
ବିଜେ ଏଥି ରନ୍ ସିଂହାସନେ
ବିଜେ ଦେବଗଣ
ନିର୍ଝର ସେବଇ ନିତି ସମୀର ବ୍ୟଂଜନେ
ଅଥବାକି ରାଜସଭା ବିକ୍ରମାଦିତ୍ୟର

ରାଜଧାନୀ ଉଜ୍ଜୟିନୀ ବସେ
ଦେବଦୁର୍ଗ ପାଠେ
ନବରନ୍ ମଣ୍ଡଳୀର ସୁଯୋଗ୍ୟ ପୁରୋଧା
କାଳିଦାସ ମେଘଦୂତ ବଖାଣନ୍ତି ବସି।

କାହିଁଗଲେ ଶାସ୍ତ୍ରୀ ଶିବ କାହିଁ ସୁଦର୍ଶନ
ବିଦ୍ୟାରନ୍ ନୀଳମଣି ଜ୍ଞାନ ଭଣ୍ଡାରର
ଦୀନବନ୍ଧୁ ବଳଭଦ୍ର କବି ଲିଙ୍ଗରାଜ
ହରିହର ବୃନ୍ଦାବନ ଦେବ ଜଳନ୍ଧର
କେ ଲେଖିଲା କେତେ ଇତି କଥା

କେତେ ରାସ ରଚିଲେ ତୋ କୋଳେ।
ଦେବଦୁର୍ଗ ରାଜଧାନୀ
ବିଜ୍ଞସଭା ବସେ ଏଥି ନିତି
ତର୍କଶାସ୍ତ୍ର ବଖାଣନ୍ତି ମୈଥିଳୀ ବାବାଧା
ଆଉ ଶ୍ରୀ କାଳି ଚରଣ
ତପୋଭୂମି ଏହି ବନ ଭୂମେ
ଆର୍ଯ୍ୟ ଋଷି ସପ୍ତକୁଣ୍ଡେ ସ୍ନାୟୀ
ପ୍ରଚାରନ୍ତି ବେଦମନ୍ତ୍ର ଜୀବନ ଦର୍ଶନ।

ସବୁତ ଦେଖିଛ ତୁମେ ସବୁତ ଶୁଣିଛ ପ୍ରତିଧ୍ୱନି ଛଳେ
କହ ଏବେ ବାରେ
ଗହ୍ୱର ଗର୍ଭରୁ
ଜୀବନତ ନୁହେଁ ସତ୍ୟ'
ଲୋଳ ବିନ୍ଦୁ ଚପଳ କେବଳ
ସତ୍ୟ ଏକା ଶିବମୟ ଶାଶ୍ୱତ ସୁନ୍ଦର

'କବିଙ୍କ "ମଧୁ ମାନସ" କବିତା ସଂକଳନରୁ ଗୃହୀତ।

# ପ୍ରଧାନ-ପ୍ରପାତ

ରାମଚନ୍ଦ୍ର ବ୍ରହ୍ମା ।।

(୧)

ପ୍ରଧାନ ପ୍ରପାତ ରହିଛ ମଉନେ
କହବାରେ ଫେଡି ଅତୀତ କଥା
ଅତୀତ କାଳରେ ଶୁଣିଅଛ କେତେ
ବାମଣ୍ଡା ମହିମା ଗୌରବ ଗାଥା ।
ସୁନ୍ଦର ପ୍ରକୃତି ଅପରୂପ ଶୋଭା
ତୁମର ମଧୁର ଦିବ୍ୟ ବେଭାର ।
ତେଣୁ ସିନା ନିତି ବିହରଣ କରେ
ମହାନନ୍ଦେ ପୂର୍ଣ୍ଣକରି ଅନ୍ତର ।
ଯହିଁ ସଦା ମୁନି- ସେବ୍ୟ-ବିଜନତା
ରାଜପଣ କରେ ଅତି ଉଦାସେ
ଯହିଁ ପକ୍ଷୀଗଣ କାକଳି କୂଜନେ
ଜଗତ ଜନଙ୍କ ଦୁଃଖ ବିନାଶେ ।
ବନ ସବୁଜିମା ସୂଚିପଟ ଛବି
ଶୁଭ୍ର ସ୍ୱଚ୍ଛ ନୀରେ ପ୍ରତିବିମ୍ବିତ
ସେହି ଭାବ ଆଜି ଏ ପୁଣ୍ୟ ଆବାସେ
ମନ ପ୍ରାଣ କରେ କି ଆଲୋଡିତ ।

(୨)

ପ୍ରଧାନ ପ୍ରପାତ ଦେବ ଶିଶୁ ପ୍ରାୟେ
ତୁମରି ନିକଟେ ଲଭି ଜନମ
ସାହିତ୍ୟ ସୌରଭ ଜ୍ଞାନାଲୋକ ଦାନ
ବ୍ରତ ପାଳନରେ ହେବି କି କ୍ଷମ ?
ଏ ଝରଣା ତୀରେ ବାମଣ୍ଡା କୋଳରେ
'ଲଭିଲିଣି ଆଜି ପବିତ୍ର ଶିକ୍ଷା'
ଦିବ୍ୟ-ଭାବ ସଦା ଜାଗ୍ରତ କର ହେ
ତବ ପଦେ ମୋର ଏତିକି ଭିକ୍ଷା

(୩)

ତୁମରି ମହିମା ତୁମରି କରୁଣା
ବଳେ ଫେରିବ ମୋ ଜୀବନ ଗତି
ତୁମରି ସେନେହ ଶୁଭ ଦୃଷ୍ଟି ବଳେ
ଜନମିବ ହେଲେ ଶାନ୍ତି ପୀରତି ।
ଲୋଡା ନାହିଁ କେବେ ପାର୍ଥିବ ପ୍ରଣୟ
ଦୋଷ ଦ୍ୱେଷ ମିଥ୍ୟା ଯହିଁ ପୂରିତ,
ଲୋଡା ନାହିଁ କେବେ ମୋହର ବନ୍ଧନ
ଯହିଁ ମନ ପ୍ରାଣ ସଦ୍ୟ ବ୍ୟଥିତ ।
ଶାଶ୍ୱତ ସୌନ୍ଦର୍ଯ୍ୟ ଶାଶ୍ୱତ ପୀରତି
ଶାଶ୍ୱତ-ପ୍ରଣୟ ଦୁର୍ଲଭ ଭବେ
ସ୍ୱର୍ଗୀୟ ସଂପଦ କାହୁଁବା ମିଳିବ
ଅସାର ଭାବନା ନ ଆସୁ ଲବେ ।

(୪)

ସତ୍-ଚିଦାନନ୍ଦ ସଦାନନ୍ଦ ରୂପ
ହୃଦୟ-ଗଗନେ ସଦା ବିରାଜୁ
ସେ ଜ୍ୟୋତିର ତେବେ ଜୀବନ-ଆଲୋକ
ବିକୀରଡି ହୋଇ ପରାଣ ମାଜୁ ।
ପ୍ରଗତି ତରଣୀ ମୁକତି ସରଣୀ
ହେବତହିଁ କିବା ସଦା ବିମଳ
ସେହି ପଥେ ଗମି ଜୀବନ ସୁକୃତ
ବିହିତ କି ତାର ତପସ୍ୟା ଫଳ ।

(୫)

ପ୍ରଧାନ ପ୍ରପାତ ! ଜଣାଏଁ ତୁମରେ
ଦିଅ ହେ ଆଶିଷ ଫେଇ,
ସେ ଆଶିଷ ବଳେ ସାହିତ୍ୟ ତରୀ ମୁଁ
ଅକାତରେ ନିଏ ବାହି ।

(କବିଙ୍କ "ସ୍ମାରକୀ" ୧ କବିତା ସଂକଳନ ରୁ ଗୃହୀତ)

ଗଛ ଲତା ଭରା ଫୁଲ ଫଳରେ
ଜଳଚର ଜୀବ ନଦୀ ନାଳରେ ।
ବାଘ ଭାଲୁ ହାତୀ ସାପ ନେଉଳ
ସବୁ ସାଙ୍ଗ ଏଠି ସବୁ ବଉଳ ।
**ବଣ ରାଇଜ (କବିତା ସଂକଳନ ) ଫଣୀନ୍ଦ୍ର ଭୂଷଣ ନନ୍ଦ ।**

# ପ୍ରଧାନ ପାଟ

ଗିରିଧାରୀ ନନ୍ଦ

ଓ ଗୋ ସାଧ୍ୱୀ ପ୍ରଧାନ ପାଟ
କିଆଁ ତୁମେ ଆଜି ଖାଲି କାନ୍ଦ ।
ପ୍ରତି ରାତ୍ରୀ ତୁମ କୁମେରୁର ମହାରାତ୍ରୀ
ପ୍ରତିଦିନ ସାହାରାର ମରୀଚିକା ।

କମ୍ପେ କି ହୃଦୟ ତୁମ ପାଇଁ କାର ?
ତୁମ ଭର୍ତ୍ତାର !
ସେତ ରକ୍ଷକ୍ ଭକ୍ଷକ୍ ଆଜି
କମ୍ପିବ କେମିତି ଯେ ତା'ର
କମ୍ପିଲା ନା ବି ଉତ୍କଳ କେଶରୀର
ତୁମେ ହେଲ ଅପାଂକ୍ତେୟ କନ୍ୟା ,
କଳିଙ୍ଗ ସିଂହ ଜାନୁଭଗ୍ନ
କରିପାରିଲାନି ବି ରକ୍ଷା
ସବଧା ବିଧବା ତୁମେ ଆଜି
ଅପାଣବା ପୃଥିବୀ ରେ ।

ଗଙ୍ଗବଂଶ,ଅବଟଂଶ,ଅପଭ୍ରଂଶ,
ମୁକ୍ତ ସେ କରିବ କିପରି ?
ସେ ଯେ ନିଦ୍ରିତ ବନ୍ଦୀ ମଥୁରାର
ନିଦ୍ରିତ କାରାଗାରେ ।

ଅବୁଦ୍ଧ ଚିନ୍ତାର ପଙ୍କିଳ ଜଳରେ
ବୁଧ ହଂସ-କେଳିସର
ପାଲିଟିଚି ଗାଡିଆଗଙ୍ଗା,
ଚୋ ସଖା ଜନତା ବୁଡିଚି ଏ ଗାଡିଆରେ
ଦେବଦୁର୍ଗ ଗନ୍ଧେ ତା ଶବ ଦୁର୍ଗନ୍ଧରେ ।

ବିପ୍ଳବ କର ନା କିଆଁ ଦେବୀ ?.
ଧର୍ଷିତା ତୁମେ ସତ
ନୁହଁ କିନ୍ତୁ ଆମ୍ରପାଲୀ,
ଅମୃତର ତୁମେ ପୁତ୍ରୀ
ହୁଅ ଅଭିଯାତ୍ରୀ
ଘୃଷ୍ଟ ବିପ୍ଳବ ପଥେ ।
ବିପ୍ଳବ କରିବାକୁ କୁହ ତୁମେ ବନ୍ଧୁ ।

କା ସାଥେ କରିବି ବିପ୍ଳବ ମୁଁ ?
"ପ୍ରମୋଦ ଉଦ୍ୟାନ"ଭଗ୍ନ
ମରିଚ ସାରିଚି ବହୁଦିନୁଁ,
ମରିଚି ବି ସଙ୍ଗିନୀ ରାଣୀ ବାଗାନ୍"
ମଧୁବନ ଭଙ୍ଗ ଭୂଇଁରେ
ସେଠି ଆଜିଖାଲି ଅନ୍ଧକାର
ଭଗ୍ନ ପ୍ରେତାତ୍ମାଙ୍କ ଭିଡ !

ମିଥୁନିତ ଯକ୍ଷଯକ୍ଷିଣୀ କୋଣାର୍କର
ମୃତ୍ୟୁର ଅପେକ୍ଷାରେ
ନିର୍ବାକ ଚନ୍ଦ୍ରଭାଗା ନିର୍ଜନ ବେଳାଭୂଇଁ
ସମୁଦ୍ର ନିସ୍ତେଜ ଅର୍କକ୍ଷେତ୍ରର ।
ନୀରବ "ସପ୍ତଶଯ୍ୟା"
ମରିଚି "ହରିଣ ପାର୍କ"ତାଳଧ୍ୱଜ ନଗରୀର
ସେଠି ଆଜି ଚିମନୀ ଧୂଆଁର ଯୁଦ୍ଧ
ସଭିଏଁ ଶ୍ୱାସରୁଦ୍ଧ ।

ଏହା ହିଁ ମୋ ଭଗ୍ନୀ ବାନ୍ଧବୀଙ୍କ ଇତିହାସ
ଆଉ ମୋ ପୁତ୍ରପୁତ୍ରୀ
ଗଛପତ୍ର,ଗୁଳ୍ମ,ଲତାଙ୍କର ?
ବିବ୍ରତ କରେନା ତାରକୋଳି
ଅରଣ୍ୟ ପଥିକଙ୍କୁ ଆଜି,
ହୁଏନା ସାମଗ୍ରୀ ଜାମୁ

ନବ ବଧୂର ଭୋଗପାତ୍ର ରୁ
ଶୁବେନା ବି ତୃଷ୍ଣାଏ କ୍ଷୀର
ବଞ୍ଚନ୍ତେ କେମିତି ଯେ !
ବଞ୍ଚନ୍ତେ କି ନବଞ୍ଚନ୍ତେ
ଘାତକଙ୍କ କୁଠାର ଘାତ
ସକଳ ଆକୁଳ ମିନତୀ ସେମାନଙ୍କ
ବୃଥା ନିସ୍ଫଳ ପ୍ରୟାସ,
ଶୁଣିଲେନି ଏ ନିଷ୍ଠୁରେ
ଶୁଣିନ କି ଏମାନଙ୍କର ନିଷ୍ଠୁର ଅଟ୍ଟହାସ ?

ଶୁକ୍ଳରା,ହରିଣୀ ଲଭିଛନ୍ତି ମୃତ୍ୟୁ
ଆଉ ଯଦି ବଞ୍ଚିଥିବେ ରହିଥିବେ
ବନ୍ଦିନୀ ହୋଇ ସର୍କସ ପାର୍ଟିର ଯନ୍ତାରେ
ଗଢେନା ସୁନାର ଗୌରାଙ୍ଗ ମଧୁ ମକ୍ଷିକାର
ଗାଏନା କୋଇଲି ବାସନ୍ତିକା
ସ୍ୱାଗତ କରି ବସନ୍ତକୁ
ନାଚେନା ମୟୂର ମୟୂରୀର ସାଥେ
କଳାବାଦଲକୁ ଦେଖି ଆଷାଢର ।

ସର୍ଭିଏ ତ ମୃତ ଆଜି
ଅଥବା ମୃତ୍ୟୁର ପ୍ରତୀକ୍ଷାରେ
ପୁତ୍ରପୁତ୍ରୀ,ବାନ୍ଧବ,ବାନ୍ଧବୀ
ସବୁ ଆଜି ବୁଢୀ ମା'ର କାହାଣୀ ।

ହେବି ବିପ୍ଳବିନୀ କେମିତି ମୁଁ
ସହଯାତ୍ରୀ କିଏ ?
ବିପ୍ଳବ ମରିଚି ପୃଥିବୀରୁ
ସବୁଆଡେ ପେଙ୍ଗୁଇନ୍‌ଙ୍କ ନୀରବତା
ଅଥବା ଶ୍ୱାନ ଶୃଗାଳଙ୍କ ହିଂସ୍ରତା,
ଉଦାସ ମୁକ୍ତିର ମୂର୍ତ୍ତୀ

ସିନ୍ ନଈରେ ମୃତ୍ୟୁର ଶାନ୍ତି
"ଲାଲ୍‌ଚୌକ୍"ଶ୍ମଶାନ୍,
'ହେବ୍ରନର ସନ୍ତ୍ରାସବାଦ୍,
'ତିଆନାନ୍‌-ମେନ୍'ରେ ପ୍ରତି ବିପ୍ଳବର ବିଭୀଷିକା
ଅମାବାସ୍ୟାର ଅନ୍ଧକାର
ପ୍ରେତାତ୍ମାଙ୍କ ଧର୍ମଯୁଦ୍ଧ !
କହବନ୍ଧୁ କେମିତି ହେବ ବିପ୍ଳବର ଅଭ୍ୟୁଥାନ ?

ମୁଁ ଆଜି ଅବାନ୍ତରଟିଏ
ମୃତ୍ୟୁର ଅପେକ୍ଷାରେ ,
ମୋ ସ୍ମୃତିସ୍ମୃତି ହୋଇ ରହିଯାଉ
ଛିନ୍ନ ପୃଷ୍ଠାରେ ଭୂଗୋଳର
ଅନେକ ଅଜଣାଙ୍କ ପରି ,
ମୃତ୍ୟୁ ହେଉ ମୋର ଅନ୍ତିମ କାରାବାସ ।

ହେ ମୃତ୍ୟୁ ତୁମେ ଆସ
ଅନନ୍ତ କାଳରୁ ଆସୁଥିବା ପରି
କରିବି ମୁଁ ତୁମକୁ ଆଲିଙ୍ଗନ
ତୁମ କୋଳେ ଶୋଇଯିବି
ହେ ମୃତ୍ୟୁଞ୍ଜୟୀ ତୁମେ ଆସ
ମୁଁ ତୁମ ପ୍ରତୀକ୍ଷାରେ
ପ୍ରଧାନପାଟ ମୃତ୍ୟୁର
ବାଟୋଇ ମୋର
ଜୀବନ୍ନ୍ୟସ୍ତ ସୃଟିର
ଦୋସର ।

ଶୁଭରେ........ଆସିଛି ନବ ପ୍ରଭାତ
ପ୍ରଧାନ ପ୍ରପାତ ହୁଏ ପୁଲକିତ
ପାଇ ଏଇ ଶୁଭ ସଂକେତ
ଆସିଛି ନବ ପ୍ରଭାତ ।

(ଚିନ୍ତାମଣି ଦାଶ)

# କହ ଗୋ ପ୍ରଧାନପାଟ !

**ଶ୍ରୀ ଦୁର୍ଗା ପ୍ରସାଦ ଦ୍ୱିବେଦୀ।**

କହ ଗୋ ପ୍ରଧାନପାଟ, ଗଡ଼ ସାମନ୍ତିନି !
ଶୁଷ୍କ-ମୁଖେ ଶୂନ୍ୟ ହୃଦେ ଚାହିଁଅଛୁ କିଆଁ ?
କଳ ନାଦେ ନ ତୋଷୁଛୁ ନାଗରିକ ଗଣେ।
ଛନ୍ଦହରା ଆଜି ତୋର ମଧୁର ରାଗିଣୀ।

କହ ଗୋ ମଉନାବତି ! କି ଘୋର ବେଦନା
ବିଦାରଣ କରେ ଆଜି ତୋର ମର୍ମସ୍ଥଳ ?
ଆର୍ତ୍ତନାଦ ପ୍ରତିଧ୍ୱନି ତୋଳେ ରହିରହି।
ଅଶ୍ରୁଧାରା ଝରିପଡେ ବଦନ ମଣ୍ଡଳୁ।୨

ଅୟି ଚାରୁଶିଳେ ! ତୋର ଚାରୁ ଭ୍ରୂରୁ ପରେ
ବକ୍ରଗତି କରେ କେତେ କୁଞ୍ଚନର ରେଖା।
ଆଗୋ ତରଙ୍ଗିଣି ! ହୋଇ ଚିନ୍ତାରେ ମଗନ
କି ଭାବନା କରୁଅଛୁ ଦିବସ ରଜନୀ ? ୩

ତୁ ପରା ଗୋ ! ବାମଣ୍ଡାର ଗୌରବ-ସଙ୍ଗିନୀ
ସ୍ୱର୍ଣ୍ଣ-ଯୁଗ-ଇତିହାସ ସାକ୍ଷୀ-ସନାତନୀ।
ଦେଖିଛୁ ତ ଏ ଭୂମିର ଗରିମାର ଲୀଳା।
ଶୁଣାଇଛୁ ପାନ୍ଥେ କେତେ ମହିମା ସଙ୍ଗୀତ।୪

ବିଶ୍ୱ କଲ୍ୟାଣ-ଭାଜନ ରାଜା ବାସୁଦେବ
ନିଜ ମହିମାରେ ବରିନେଲେ ମହାଯଶ।
'ଉତ୍କଳ-ଉତ୍କର୍ଷ ହିତ-ସାଧନ ତତ୍ପର'
ସଚ୍ଚିଦାନନ୍ଦ ରାଜନ ବାସୁଦେବାତ୍ମଜ।୫

କବି 'ବଳଭଦ୍ର', 'ଜଳନ୍ଧର':ବୃନ୍ଦାବନ',
'ହରିହର', 'ଲିଙ୍ଗରାଜ'-ବାଗ୍‌ଦେବୀ ନନ୍ଦନ
ସାରସ୍ୱତ ବୀଣାବାଣୀ ତୋଳିଲେ ଝଙ୍କାର
'ଦେବଦୁର୍ଗ' ହେଲା ପୁଣ୍ୟ 'ତୀର୍ଥ ସାରସ୍ୱତ'

'ପ୍ରକୃତି ପୁରୋଧା' କବିଗୁରୁ 'ରାଧାନାଥ'
ମୁଗ୍ଧ ହେଲେ ଚାହିଁ ତୋର ଶ୍ୟାମକାନ୍ତ ଶିରୀ।
ତୋପଧ୍ୱନି ସଙ୍ଗେ ତୋଳି ମନ୍ଦ୍ର ପ୍ରତିଧ୍ୱନି
ଗାଇଲୁ ବନ୍ଦନାଗୀତି କବିବରଙ୍କର।୬

ଚିର ବସନ୍ତର ତୁହି ଲୀଳା-ସହଚରୀ।
ତୋ ରୂପ-ମାଧୁରୀ-ରସ ପାନେ ହୋଇ ମତ୍ତ
'ଲଳିତ ବସନ୍ତେ' ଆଉ 'ବସନ୍ତ-ନିବାସେ'
ଅସ୍ମିତା ବିସ୍ମୟେ ମଗ୍ନ ସଦା କବିକୁଳ

କହ କହ ଆଜି ଆଗୋ ! ମାନସ ମୋହିନି !
'ଉତ୍କଳର ଉଜ୍ଜୟିନୀ" ଦେବଦୁର୍ଗ କାହିଁ' ?
କାହିଁ ଦେବଦୁର୍ଗ 'ବୁଧ-ହଂସ-କେଳିସର'
ହରିଲା କି ସବୁ ଶିରୀ ନିଶା-ନିଶାଚରୀ।୯

ଚାହିଁ ଦେଖ ଊର୍ଦ୍ଧ୍ୱେ ତୋର ଶିଖରୀ-ଶିଖରେ
ଜ୍ୟୋତିର୍ମୟ ଦିବ୍ୟ ଏକ ସିଂହାସନେ ବସି
ଦେବଗୁରୁ ବୃହସ୍ପତି ରୂପେ ବାସୁଦେବ
ଢାଳନ୍ତି ଆଶିଷ ଧାରା ବରାଭୟ କରେ।୧୦

ଅନା ଗୋ ପାବନି ! ପୂର୍ବ ଦିଗ୍‌ବଳୟ ତଳେ
'ଭୁବନେଶ୍ୱର'ଙ୍କ ଦିବ୍ୟ ତ୍ରିନୟନ ଝଲେ
(ସେହି) ରଶ୍ମିରେଖା ଉଠେ କ୍ରମେ ଅନ୍ଧକାର ଭେଦି।
ହସିବ ଗୋ ! 'ଦେବଦୁର୍ଗ' ନବୀନ ଆଲୋକେ।୧୧

ଗଛ ମାନେ
ସବୁଜ ସବୁଜ ବେହରଣ ତଳେ
ଈଶ୍ୱର ପରି ଦିଶନ୍ତି
କଳା ସମୟ ଭିତରେ
ଧଳା ପୋଷାକର ଧର୍ମଯାଜକ ଯେମିତି।

**ଅରଣ୍ୟର ଡାକ ( କବିତା ସଂକଳନ) - ଫଣୀନ୍ଦ୍ର ଭୂଷଣ ନନ୍ଦ।**

# ପ୍ରଧାନ ପାଟ

ଯୋଗେଶ ଚନ୍ଦ୍ର ଦଳ ବେହେରା

ମୁଖରିତ ଝର ପ୍ରଧାନପାଟରେ
କହେ ସାତ ପାଟ କଥା ,
ଆଦିମ କାଳରୁ ଏ ଯାଏଁ ଜଗାଏ
କେତେ ଇତିହାସ ବାର୍ତ୍ତା ।୧

ମାଆପରି କ୍ଷୀର ପିଆଇ ଯେ ନୀର
ସକଳ ପ୍ରାଣୀ ସମାଜେ
ପାରେନା ବି ଭୁଲି କୂଜନ କାକଳି
ନିତି ମନେ ମନେ ମଜେ ।୨

ଜୀବନର ନାଟ ବଟ କଷ୍ଟବଟ
ସବୁଜ ବନେ ପ୍ରକଟ
ଭୂସ୍ୱର୍ଗ ଭବନ ପ୍ରକୃତି ନିର୍ମାଣ
ଦେବଗଡର କିରୀଟ ।୩

ପ୍ରାକୃତିକ ଶୋଭା ଅତି ମନଲୋଭା
ବର୍ଣ୍ଣିବାକୁ ନାହିଁ ଭାଷା
କାହିଁ କେତେ ଦୂର ଦୂର ଦୂରାନ୍ତରୁ
ପଡେ ମଙ୍ଗଳ କଳସା ।୪

ତୋ ପାଟି ନେତ୍ରରେ ସଭିଏଁ ସମାନ
ସାନ ବଡ କିଏ ନାହିଁ
ଜୀବନ ହିଁ ଜଳ ବୃକ୍ଷ ହିଁ ଜୀବନ
ରକ୍ଷା କରୁ ସିନା ତୁହି ।୫

ଉତ୍ସବ ମୁଖର ହେଉ ଅବିରତ
ନୃତ୍ୟ ଗୀତ ତାଳ ମାନେ
ଜଳଜ ଲୋଚନା ବାରିଜ ବଦନା
ସ୍ୱାଗତ ଜଣାଅ ସାନେ ।୬

ମାଗୁଛି ମାଗୁଣି ତୋ ଚରଣ ତଳେ
ବିତର କରୁଣା ବାରି
ଯୁଗଯୁଗ ଧରି ଗାଉଥିବି ଗୀତ
କଣ୍ଠରେ ଲହରୀ ଭରି ।୭

---

# ବାଘ

କୁମୁଦ ଚନ୍ଦ୍ର ଶତପଥି

"ପ୍ରଧାନପାଟ"ମା ଲୋ
"ବାଘ" ମୋର୍ ହଜିଛି
ହଜିଛି "ଶଙ୍ଖ"
"ହିତୈଷିଣୀ"ସାଥେ
ସାହିତ୍ୟ ସମ୍ଭାର
ଦେଖିଛୁକି କହ-
କାହିଁ ଯାଇଛନ୍ତି
ବାଘ ସବୁ ମୋର ??

ନୀରବ ବାଘ ଏବେ
ବିଶ୍ରାମ ନେଉଛି
ଗୁହାରେ ତୋର
ବେଶ୍ ଆରାମରେ;
ଭାଙ୍ଗିବ ଆଳସ୍ୟ
ଉଠିବ ସେ
ଝାଡି ଝୁଡି ହୋଇ
ନାଚିବ,ରଚିବ
ଅମର ସାହିତ୍ୟର
ଗନ୍ଥାଘରେ
ହେବ କୃତୀ ତା'ର
ପ୍ରତି ସ୍ପନ୍ଦେ ସ୍ପନ୍ଦେ ।

ସଂସ୍କାର,ଦେବଗଡ

# ପ୍ରଧାନ ପାଟ

ସନ୍ତୋଷ କୁମାର ମହାପାତ୍ର

ନିଘଞ୍ଚ ଜଙ୍ଗଲ ମଧ୍ୟରେ
ପାହାଡ ଗାତ୍ରରେ
ଜନ୍ମ ମୋର
କାଳକ୍ରମେ
ପାଦଥାପି ଚାଲିଲି ଆଗକୁ
ଶାଳବଣ,କଣ୍ଟା ଝଟା ଡେଇଁ
କେଁଦନ୍ତା ପାହାଡ
ବକ୍ଷ ଚିରି
ଅନେଇ ଅନେଇ
ପୂର୍ଣ୍ଣ ଯୌବନା
ପାଲଟିଲି ଝରଣା ।

ପ୍ରଥମ କିରଣେ
ଉଦ୍ଭାସିତ
ରାଜା ଭାବୁକ ଓ
ଯବଣା କ୍ଳିଷ୍ଟ ମଣିଷ
ରଚିଗଲେ
ଅନେକ କବିତା
ଭୁଲିଗଲେ
ସାମୟିକ ଦୁଃଖ

ସମୟ କ୍ରମେ ବୃଦ୍ଧ କଲେ
ଯୌବନର ଉଦ୍ଦାମ ସଙ୍ଗୀତ
ଖିନ୍‌ଭିନ୍ ହେଲା
ମୋ ଯୌବନର ବିଭା
ତଥାପି ବି ମୁଁ
ଶାନ୍ତ କମନୀୟ
ଆଜି ମୁଁ
ପୌଢା
ସେ ଦିନର
କବି ଭାବୁକ ମନର
ମାଦକତାର ମହକ
ବାସହୀନ,ରଙ୍ଗହୀନ

ଅଥଚ ସଭିଏଁ
କହନ୍ତି ମୁଁ
ସୁନ୍ଦର
ନିପାରିଲା ଜୀବନରେ
ସବୁ ପାଇବାର
ଅଥଳ ସାଗର ।

# ପ୍ରଧାନପାଟ

ଜୟନ୍ତ କୁମାର ପୃଷ୍ଟି

ହୋଇ ନ ପାରେ ଦାର୍ଜିଲିଂ କି ମସୁରୀ
ତଥାପି ଲାବଣ୍ୟବତୀ
ଓଢଣି ଟାଣିଛି
ସବୁଜ ବନାନୀ
ଗୀତରୁ ଝରୁଛି ରାଗିଣୀ
ଲହଡି ଭାଙ୍ଗୁଛି ଭରା ଯଉବନ ।

ଭେଟେ ଯେବେ ପରିବ୍ରାଜକ
ହୋଇ ଯାଏ ବିଭୋର
ମତୁଆଲା ସାଜେ ହୃଦୟ
କରିବାକୁ ନିଜର ।।

ଟୁସୁଲା,କଣ୍ଟାପାଲି,ଦେବଗଡ

# ପ୍ରଧାନ ପାଟ

ପ୍ରଫୁଲ୍ଲ ଚନ୍ଦ୍ର ଗିରି

ଗଙ୍ଗାଧର ଶିରୁ ପୂତ-ଗଙ୍ଗା ମାତା
ସତେକି ପଡୁଛି ଝରି
ଦିଶଇ ମଣ୍ଡଳେ ନୟନ ପଟଳେ
ପ୍ରପାତ ଶୋଭା ମାଧୁରୀ ।
ଜାହ୍ନବୀ ଯେସନ ଭଗିରଥ ଯୋଗୁଁ
ନାମ ବହେ ଭାଗିରଥୀ,
ପ୍ରଧାନ ପାଟର ନାମ ଗାଉଛନ୍ତି
ଆସି କେତେ କବି-ରଥୀ ।
ବାମଣ୍ଡା-ମାଟିର ମୁକୁଟ ପରାୟେ
ଝଟକେ ମାନସପଟେ
ପରିଚୟ ତା'ର ଯେଉଁ ସ୍ଥାନେ ସଦା
ପ୍ରଧାନ ପାଟ ତହଟେ ।
ଦୁଇଶ'ଛବିଶ-ଫୁଟୁ ଝରେ ଝର
ମଧୁର ସଙ୍ଗୀତ ଗାଇ
ଶୁଦ୍ଧ,ଶୁଭ୍ର ଧାର ଝରେ ଅବିରତ
ସକଳ କଲ୍ୟାଣ ପାଇଁ ।
ପ୍ରକୃତ ରାଣୀର ସବୁଜିମା ଶୋଭା
ପୁଲକିତ କରେ ପ୍ରାଣ

ବନ,ଲତା-କୁଞ୍ଜ-ଜାତି ଜାତି ଫୁଲ
ହରି ନିଏ ଜନ ମନ ।
ମୂଲ୍ୟ ବାନ ଦ୍ରୁମ ଭରିଛି କାନନ
କେତେ କେତେ ମହୌଷଧି
ପାନର-ଚୂନକୁ ସଂଗ୍ରହ କରନ୍ତି
ପୁରବାସୀ ଅଦ୍ୟାବଧି ।
ନାନା ଜାତି ପଶୁ-ପକ୍ଷୀ ବାସ ସ୍ଥଳୀ
ବୁଲୁଥାନ୍ତି ସ୍ୱଚ୍ଛନ୍ଦରେ
ପିଇ ଝର ନୀର ଗାଇ ମିଠା ଗୀତ
ରହିଛନ୍ତି ଆନନ୍ଦରେ ।
ଜୀବଜନ୍ତୁ ବଧ,କାଟିବାକୁ ବୃକ୍ଷ
ରହିଅଛି ଶକ୍ତମନା
ଆସ ମିଳି ମିଶି ସଂକଳପ ନେବା
ସଫଳ ହେବ ଯୋଜନା ।
ଯେତେ ବାଢୁଥିଲେ ଭରିଛି ଭଣ୍ଡାର
କେବେ ହୁଏ ନାହିଁ ଶେଷ
କେତେ ଅଫୁରନ୍ତ ଗୁଣ ଓ ମହିମା
ଆନନ୍ଦ ଦିଏ ଅଶେଷ ।

---

ପ୍ରଧାନପାଟ

ନୈରଞ୍ଜ ନନ୍ଦ

କୁହୁଡି ଘେରା ଅରଣ୍ୟରେ
ଝାପ୍‌ସା ଦିଶେ
ତମରି ପଣତ
ଖୁବ୍ ଦୂରେ ଅଭିନୀତ ହୁଏ
ତମରି ଅପ୍ସରା ନାଟ
ପ୍ରିୟ ମୋର
ପ୍ରିୟ ତୁମେ
ପ୍ରଧାନ ପାଟ
ଫେଇ ଦିଅ
ସ୍ମୃତିର କବାଟ ।

# ପ୍ରଧାନପାଟ ପ୍ରତି

ଜନ୍ମେଜୟ ସାହୁ

ଦେବଗଡ ଅଟେ ଦେବତାଗଡ
ମହୀପୃଷ୍ଠେ ନାହିଁ ଏପରି ଗଡ । ।୧
ଦେବଗଡ ଅଟେ ଦେବଙ୍କ ଦୁର୍ଗ
ବାମଣ୍ଡା ବାସୀଙ୍କ ଅଟେ ଏ ସ୍ୱର୍ଗ । ।୨
ଦେବଗଡ ଅଟେ ପବିତ୍ର ସ୍ଥାନ
ସୁରକ୍ଷା କରିବା ଆମ ଧରମ । ।୩
ଦେବଗଡ ଅଟେ ଦେବତା ଭୂମି
ପ୍ରଧାନପାଟ ଏ ସୂଚାଏ ପୁଣି । ।୪
ଦେବଗଡ ସାହା ପ୍ରଧାନ ବୃତ୍ତୀ
ଅଧର୍ମ ହେଲେ ସେ ଛାଡଇ ଗତି । ।୫
ଅଧର୍ମ ହେଲେ ସେ ପାରେନି ରହି
ଏ ଗୁଣ ପାଇଁ ସେ ଜିଣିଛି ମହୀ । ।୬
ରୂପମୟୀ ପୁଣି ଅସୀମ ଶୋଭା
ପ୍ରକୃତି କୋଳଟି କି ମନୋଲୋଭା । ।୭
ତା କୋଳେ ଜନମି କେତେ ଯେ ରଥି
ବିକଶାଇ ଥିଲେ ବାମଣ୍ଡା କୀର୍ତ୍ତି । ।୮
ଜନ୍ମ ଦେଇଅଛି କେତେ କବିଙ୍କୁ
ଚକିତ କଲେ ସେ ଦେଶବାସିଙ୍କୁ । ।୯

ଲେଖନୀ ମୁନର କବିତା ପଢି
ଭ୍ରମଣ ପାଇଁ କି ଆସିଲେ ମାଡି । ।୧୦
କୁଳୁ କୁଳୁ ନାଦ ଝରଣା ତାର
ଦର୍ଶକଙ୍କୁ ଲାଗେ କି ମନୋହର । ।୧୧
ବୃକ୍ଷରାଜି ସବୁ ଆକାଶ ଛୁଆଁ
ଦର୍ଶକଙ୍କୁ ଲାଗେ ଏ ନୂଆଁ ନୂଆଁ । ।୧୨
ପାହାଡ କୋଳ ସବୁଜ ବନାନୀ
ଦର୍ଶକ ମନକୁ ପାରଇ ଜିଣି । ।୧୩

ଝରି ଝରି ତା'ର ଶୀତଳ ଜଳ
ପାହାଡ ତଳକୁ ଆସେ ଚଞ୍ଚଳ । ।୧୪
ପ୍ରପାତ ଉପରୁ ଝରିବା ପାଣି
ଅସୀମ ସୌନ୍ଦର୍ଯ୍ୟ ଆଣେ ସେ ପୁଣି । ।୧୫
ଧର୍ମପରାୟଣ ସୁତ୍ରଳ ରାଜା
ଶାସନେ ତାଙ୍କର ଆନନ୍ଦ ପ୍ରଜା । ।୧୬
ସୁରସିକ ରାଜା ସଚ୍ଚିଦାନନ୍ଦ
ପ୍ରଜା ପାଳନରେ ନାହିଁ ତ ଛନ୍ଦ । ।୧୭
ପ୍ରଧାନ ପାଟର ଜଳ ଭଣ୍ଡାର
ବାମଣ୍ଡାଗଡର ଅଟେ ଆଧାର ।୧୮

# ପ୍ରଧାନ ପାଟ

ଜଗ ମୋହନ ମିଶ୍ର

ପରଧାନ ପାଟ କରୁ କେତେ ନାଟ
ଲତା ଗହଳକୁ ଡେଇଁ,
ଧାର ଧାର ନୀର ଝରାଇ ଆଣୁଛୁ
ମନ ଭୁଲାଇବା ପାଇଁ ।୧।

ସାତଶ ବରଷ ପୂର୍ବ ଇତିହାସ
କୁଳୁ କୁଳୁ ନାଦେ ଗାଇ,
କାହିଁ କେତେ ଦୂର ମାଆ ଝିଅ କୁଣ୍ଡ
ତା ପାଖରୁ ଆସୁ ବହି ।୨।

କବି ରାଧାନାଥ ଶ୍ରୀ ମଧୁ ସୂଦନ
ଯୁଗସ୍ରଷ୍ଟା ସେନାପତି,
ଗଡନାୟକଙ୍କ ଆଗମନେ ଧନୀ
ହୋଇଛି ତୋ ପୂର୍ବ ଗୀତ ।୩।

ସୃଷ୍ଟି କରିଗଲୁ କବି କବୟତ୍ରୀ
ସଚ୍ଚି,ବାସୁଦେବ ରାଜ,
ବଳଭଦ୍ର,ବୃନ୍ଦାବନ,ସୁଲୋଚନା
ଦୀନବନ୍ଧୁ,ଲିଙ୍ଗରାଜ ।୪।

ଘଞ୍ଚ ଶାଳବଣେ କାକଳୀ କୂଜନେ
ସାଜିଛୁ ସୁନ୍ଦରୀ ରାଣୀ,
ଅପାଶୋରାରୂପ ଦେଖିଲେ ଦର୍ଶକ
ମନେ ହେଉଥାନ୍ତି ଗୁଣି ।୫।

ଶିବଜଟା ଭେଦି ଗଙ୍ଗାସମ ଖସି
ଆସୁକି ଲତା ଗହଳୁ,
କୁଣ୍ଡେ କୁଣ୍ଡେ ଡେଇଁ ଭଉଁରି ଖେଳାଇ
ନା ନା ରଙ୍ଗେ ଖେଳ ଖେଳୁ ।୬।

ଚିକେଇ ତମାଳ ପଳାସ ଶିମୂଳୀ
ଫୁଲରେ କରି ମଣ୍ଡଣି
ପାହାଡୁ ପାହାଡ ଡେଇଁ ଡେଇଁ ଆସୁ
ଦୋହଲାଇ ନୀଳ ବେଣୀ ।୭।

ତୋ ପାଦ ଦେଶରେ ଗଙ୍ଗବଂଶ ଗଡ
ଦେବଗଡ ନାମେ ଖ୍ୟାତ,
ମନ ଲୋଭାଣିଆ ବସନ୍ତ ନିବାସ
ଖ୍ୟାତ ଲଳିତ ବସନ୍ତ ।୮।

ଶହେ ବରଷର ପୂର୍ବେ ଏ ରାଇଜ
ଜ୍ଞାନ ବିଜ୍ଞାନରେ ଭରା,
ଡାକ ଟିକଟର ପ୍ରଚଳନ କଥା
ଜାଣିଛି ଜଗତ ସାରା ।୯।

ଲୋକ ମୁଖେ ଶୁଭେ ପୁନେଇଁ ରାତିରେ
ତୋ କୋଳରେ ବସେ ସଭା,
ଜାକ ଜମକରେ ଆସି ବସନ୍ତ ଲୋ !
ନିତି ନର୍ତ୍ତୁ ଦେବ ଦେବା ।୧୦।

କୋରଡ କୋଟ ସେ ଭଉଣୀ ପରା ଲୋ!*
ସେତ ସପନ ସୁନ୍ଦରୀ,
କାଳ ବହିଗଲା କଥା ରହିଗଲା
ସେଦିନ ବିଦ୍ୟୁତ ବାରି ।୧୧।

ସୂର୍ଯ୍ୟଥିବା ଯାଏ ଚନ୍ଦ୍ରଥିବା ଯାଏ
ସୃଷ୍ଟିଥିବା ଯାଏ ତୁହି,
ମୁକ୍ତାନିନ୍ଦି ବାରି ବିନ୍ଦୁ ବିନ୍ଦୁ ଧରି
ନିଜେ ଯାଉଥିବୁ ବହି ।୧୨।

*ପୁରୁଣାଗଡ

# ପ୍ରଧାନ ପାଟ

ପ୍ରଫୁଲ୍ଲ କୁମାର ମହାପାତ୍ର

ପ୍ରଧାନ ପାଟ ତୁ ପ୍ରଧାନ ପ୍ରପାତ
ପ୍ରପାତ ମଧ୍ୟରେ ସାର
ନୀର ଦାନେ ତୁହି ନିରନ୍ତର ରତ
ଝରେ ନୀର ଝରଝର । ।୧

ଝର ଝର ନାଦ ମିଶିଯାଏ ଯେବେ
ବନପକ୍ଷୀ କୂଜନରେ
ଶାଶ୍ୱତ ଝଂକାରେ ମନ ଭରିଯାଏ
ପ୍ରାଣରେ ପୁଲକ ଭରେ । ।୨

ପ୍ରକୃତି କ୍ରୋଡରୁ ଖସିଆସେ ତୋର
ସର୍ପିଳ ପୀୟୂଷ ଧାରା
ସେହି ସୁଧାପାନେ ହରଷିତ ମନେ
ଦେବଗଡ ବାସୀ ସାରା । ।୩

ଗାଇଥିଲେ କବି ଗାଉଛନ୍ତି ଆଜି
ତୋ ଗୁଣ ମହିମା ରାଜି
ତୋହରି କୋଳରେ 'ବସନ୍ତ ନିବାସ'
ଗାରିମା ଯାଇଛି ହଜି । ।୪

ଗ୍ରୀଷ୍ମ ପ୍ରବାହରେ ଦେଖିଅଛି ତୋର
ଶୀର୍ଣ୍ଣକାୟ କ୍ଳାନ୍ତି ଭରେ
ଭୀମକାୟ ରୂପ ଶ୍ରାବଣ ପରଶେ
ସ୍ୱର୍ଗୀୟ ସୁଷମା ଧରେ ।। ୫

ତୋର ଦରଶନେ ସାରା ଓଡିଶାରୁ
ଜନସ୍ରୋତ ଆସିଥାଏ
ତୋହରି କୋଳରେ ଶାନ୍ତ ପରିବେଶ
ଜନ ମନ ମଜ୍ଜିଯାଏ । ୬

ଜନମ ନେଇଛି ଦେବଦୁର୍ଗ ଠାରେ
ତୋହରି ସାନିଧ୍ୟ ପାଇ
ଅନ୍ତିମ କାଳରେ ଚିରନିଦ୍ରା ବେଳେ
ତୋ କୋଳେ ପଡିବି ଶୋଇ । ୭

ସଂପାଦକ,
ବାମଣ୍ଡା ସାହିତ୍ୟ ସଂସଦ, ଦେବଗଡ

---

ବସନ୍ତ ନିବାଶ- ବାସନ୍ତିକ ପକ୍ଷୀଙ୍କର କୂଜନ ସର୍ବଦା ଯେଉଁଠାରେ ଶୁଣାଯାଏ ।
ବସନ୍ତ ନିବାଷ- ନିତ୍ୟ ଜଳର ଦୀପ୍ତି ପ୍ରକାଶିତ ହୋଇ ଯେଉଁଠାରେ ବାସନ୍ତିକ ଶୋଭା ବିକାଶ କରେ ।
ବସନ୍ତ ନିବାସ- ଚିରଦିନ ଯେଉଂଠାରେ ବାସନ୍ତିକ ଶୋଭା ପ୍ରକାଶିତ ।

---

ତମେ ଅରଣ୍ୟ କନ୍ୟା
ବନ୍ୟା ରଚିଚ ମନରେ
ପ୍ଲାବିତ କରିଛ ତନୁମନ
ପରମ ତୃପ୍ତିରେ
ତମ ସ୍ପର୍ଶ
ନୂଆଁ ଏକ ଠିକଣା
ଦେଇଛି
ତମ ଇତିହାସ
ମୋ ଦେହରେ
ରୋମାଞ୍ଚ ଆଣିଛି ।



ଫଣୀନ୍ଦ୍ର ଭୂଷଣ ନନ୍ଦ ।

# ପ୍ରଧାନପାଟ

ଅନ୍ନଦା ଚରଣ ପାତ୍ର

ବରଷା ବିଷାଦେ ମୋ ହୃଦୟ ରତ,
ବିଷାଦର ଛାୟା ଯୌବନ ଫଳିତ
ସେ ଗମ୍ଭୀର ମୂର୍ତ୍ତି ଆକର୍ଷେ ମୋ ଚିତ୍ତ
ଚଞ୍ଚଳ ପଦ କ୍ଷେପଣେ
ପ୍ରକଂପିତ ହୁଏ ପ୍ରଧାନ ପାଟର ଅଳଙ୍କାର ରଣ ଝଣେ ।୧।

ନିର୍ମଳ ଜଳରାଶି ପଡୁଛି ଖସି
ସୁଲୁ ସୁଲୁ ପବନ ଆସୁଛି ଭାସି,
ଶିଶିର ବିନ୍ଦୁ ବିନ୍ଦୁ ପ୍ରାଏକ ଖସି
ଶୀତଳ ସମୀରଣେ ମନ ଉଶ୍ୱାର୍ଷି
ଗାଉଛି ଭ୍ରମର ନିତି
କୁଳୁକୁଳୁ ନାଦେ ମୁଖରିତ ଜଳ ଗାଉଛି
ବିଜୟ ଗୀତି ।୨।

ବୃକ୍ଷ ଗହଳୁ ଆସେ ପିକ ବଚନ
ଅମୃତ ଗାନ ମଣି ନଫେରେ ମନ
ଜାଣିବାକୁ ମୋ ମନ ହୁଏ ଉଚ୍ଛନ୍ନ
ନିବିଡ ଘନ ଶବ୍ଦେ ଶୁଭଇ ତାନ,
ପଶୁ ପକ୍ଷୀଙ୍କ ଚହଳେ
ଗହଗହ ଶବ୍ଦ ଶୋହେ ଚତୁର୍ଦ୍ଦିଗେ ଗମନ୍ତେ
ତରୁ ଗହଳେ ।୩।

ଗୁଣୁ ଗୁଣୁ ଭ୍ରମର ବୀଣା ବଜାଏ,
ଦର୍ଶକ ମନେ ଜାତ ନାରଦ ପ୍ରାଏ,
ସକଳ ଦଳ ଦଳ ଜନତା ଶୋହେ,
ଉତ୍ସବ ଦିବସରେ କି ଶୋଭା ପାଏ ?
ଆବାଳ ବୃଦ୍ଧ ବନିତା
ସରବେ ସମାନ ଏକାଧାରେ ଯାନ୍ତି ଖାଠିଏ
ଫୁଟ ଉଚ୍ଚତା ।(୪)

ମନେ ହୁଏ ଜାତ ଦେଲେ ହୁଳହୁଳି,
ବେଣୀ ବେଣୀ ଜଳ ଖସଇ ଉଛୁଳି,
ଦ୍ୱିଗୁଣ ହୁଏ ସେ ଦେଲେ ହରିବୋଲ,
ଜଳ ସଙ୍ଗେ ବାୟୁ ବହେ ଖଲ ଖଲ,
ମନ ହୁଏ ଆନନ୍ଦିତ
କିଛିକ୍ଷଣ ପରେ ବାହୁଡି ଆସିଣ ଦୂରୁଁ
ଦେଖନ୍ତି ହୃଦିତ ।(୫)

ଲଂଘି ବନ ପର୍ବତ ଶ୍ୟାମଳ କ୍ଷେତ,
ତୋ ଶୋଭା ହରିନିଏ ଦର୍ଶକ ଚିତ୍ତ,
ସଲିଳ ଦାନ କରି ଜଗତ ହିତ,
ଶୁଭେ ତୋ କୂଳେ ନିତି ଶୁଭ ସଙ୍ଗୀତ
ଜନମନ ଦୁଃଖ ହର
ଦେଇ ଦାନ,ଧର୍ମ,ଧର୍ମ ବଳେ ତୁହି ଲଭିଛୁ
ଚିର ଅମର ।(୬)

( ବାଣୀ ୧୯୬୬ ରୁ ଉଦ୍ଧୃତ । )

---

ଦିବ୍ୟ ଅବଧାନେ ଆସୁ ଏ ଗୀତ ତୁମ୍ଭର,
ହେ ରାଜେନ୍ଦ୍ର ମନ୍ଦ୍ରନାଦି-ପ୍ରପାତର ପତି
ବାମଣ୍ଡା ମଣ୍ଡଳେଶ୍ୱର,ଉତ୍କଳ ମଣ୍ଡନ,
ତୁମ୍ଭ ଶୁଭ ଆବିର୍ଭାବେ ହୋଇଛି ଉତ୍କଳେ
ଦେବଦୁର୍ଗ,ଦେବ,ଏବେ ତୀର୍ଥ ସାରସ୍ୱତ
(ମହାଯାତ୍ରା-(ଷଷ୍ଠସର୍ଗ) - ରାଧାନାଥ )

# ପ୍ରଧାନ ପାଟ

ଭୋଳେଶ୍ୱର ମିଶ୍ର

ଜାହା ପାଖରେ ହୃଦୟ ଅଛି
ହଟଚମଟ ସହରରେ ଖୋଜୁ ଖୋଜୁ
ସାଲିସ ବିହୀନ ଜୀବନ ଦେଖାଯାଏ,
ଅନାଗତ ସକାଳରେ ଈଶ୍ୱରଙ୍କ ସୃଷ୍ଟି
ଚିହ୍ନଟ କରିବା ଆଶାରେ
ନିର୍ଦ୍ଦିଷ୍ଟ ହୁଏ ଯାହା ପ୍ରତିଶ୍ରୁତି ଓ ସଂକଳ୍ପ
ପାପ ଅାଂଜୁଳା ଧୋଇବା ଯଦି
ଦେବଦୁର୍ଗ ଅରଣ୍ୟାନି ମଧ୍ୟେ
ନିତ୍ୟ ଆଶିର୍ବାଦେ କଳକଳ ପ୍ରଧାନ ପାଟ
କାବ୍ୟିକ ଉଚ୍ଛ୍ୱାସର ଧ୍ୱନି
ପଲ୍ଲବିତ କରେ ମନ ଓ ଦେହକୁ,
ନିଷ୍ପାପ ବିଶାଳ ହୃଦୟ ତାର
ମହନୀୟତା ପ୍ରକଟିତ ସଦା ସେଇଠି
ସ୍ୱପ୍ନ ଅଛି,ବିଶ୍ୱାସ ଅଛି
ଉଦାସ ଆତ୍ମାକୁ ବଦଳେଇ ଦେବାର ଯାଦୁଅଛି ।

ରଜାମୁଣ୍ଡା,ଦେବଗଡ

ପ୍ରିୟ ସହଚରୀ ପ୍ରକୃତି ସୁନ୍ଦରି
ହୋଇ ଅତି ସାବଧାନ,
ସ୍ଥାନେ ସ୍ଥାନେ ତୋହ ପାଇଁ ଥୋଇ ଅଛି
କେତେ ଅଳଙ୍କାର ମାନ ।
ପ୍ରଧାନ ପାଟ ରେ ସମ୍ପାଦି ଥୋଇଛି
ଉଜ୍ଜ୍ୱଳ ରତ୍ନ ସାମନ୍ତ,
ଲୋକ ମୁଖେ ଯାର ସୁନ୍ଦରିମା କଥା
ବ୍ୟାପିଛି ଦିଗଦିଗନ୍ତ ।

(ଉତ୍କଳ ଲକ୍ଷ୍ମୀ -(୧୮୯୪)-ଗଙ୍ଗାଧର ମେହେର)

# ।।ପ୍ରଧାନ ପାଟ ।।

ଅଧ୍ୟାପକ ସଂତୋଷ ଦେବତା

ତୋର ନୀଳ ନୀଳ କେଶକୁ
ସାଉଁଳେଇ ଦିଏ ପବନର ଧୂସରିତ ହାତ
କପାଳର ଉଜ୍ଜଳ ପ୍ରହରେ
ଦେଖାଗଲେ ରଜନୀର ଗୋପନ ମଂନ୍ଦିର,
ଜଟାୟୁ ଓଠରୁ
ସ୍ଫୁରେନି ଶବ୍ଦର ଓଂକାର
ଲୁହ ସାଥେ ଝରି ଝରି ଯାଏ ମେଘର କଜ୍ଜଳ ।।

କ'ଣ ତୋର ନ ଥିଲା ପ୍ରଧାନ ପାଟ ?
ତୋ' ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ଆକର୍ଷଣରେ
ଆକାଶରୁ
ଦଳ ଦଳ ପକ୍ଷୀ ଓହ୍ଲେଇ ଆସୁଥିଲେ
ଯାହାଂକର
ଖେଳ ଭୂମି ଥିଲା
ଓଲଟ ବଟ ବୃକ୍ଷର ଓହଳ
ସେଇ ବୃକ୍ଷ ସେମିତି ଅଛି
ସବୁ ଅକ୍ଷତ ଅଛି
କିଂତୁ ମୋଟେ ସ୍ନେହ ନାହିଁ ସଂପର୍କ ସଂପର୍କ ଭିତରେ ।।

ସତରେ,ଆଜି ତୁ ପାଲଟି ଯାଇଛୁ
ଭୂତକୋଠିର ନିବୀର୍ଯ୍ୟ ସମ୍ରାଟ
ଅନଂତାର ସକଳ ଔଦ୍ଧତ୍ୟ ସେଠି କରୁଛି ରାଜତ୍ୱ
ଆତ୍ମା ବିଳପି ଉଠୁନି
ତୋ' ସାମ୍ରାଜ୍ୟରେ
ଦେଖି ଦେଖି କଳା ଷଣ୍ଢଙ୍କର ଉତ୍ପାତ
ଶୁଖି ଯାଇଛି
ଛଳ ଛଳ ଝରଣା ଆଖିରୁ ଢଳ ଢଳ ଲୁହ
ଛୁରାମୁନେ ମପା ଚାଲିଛି ଜୀବନର ଅମାପ ପ୍ରତ୍ୟୟ ।।

ମାଟିର କପାଳେ
ରକ୍ତଟୀପା ଦେଇ ଲାଭ କ'ଣ ?
ତୋର ଦେହ ସାରା
ହାଉ.ଜାଉ କଳଂକର ଜୀବାଣୁ ଅସଂଖ୍ୟ,
ଚଟେ ଛାଡି ପୁରୁଣାଗଡର
ପୁରୁଣା ଗଡକୁ ଆଦରି ନେଇଛି ଦେବଂକର ଭାଗ୍ୟ ।।

ଏବେ ବି ତୋ ହାଟରେ
ବିକା ଚାଲିଛି ଅହଂକାରର ସଜମାଂସ
ଶୁଖି ଶୁଖି ଯାଉଛି ଈର୍ଷାର ଖରାରେ ମୁହଁର ଔଜଲ୍ୟ,
ବଢି ବଢି ଯାଉଛି
ନିଜ ଚେହେରାର ଆଡଂବର
ଦବି ଯାଉଛି ମନ
ଖସି ଯାଉଛି ନୈରାଶ୍ୟରେ ସ୍ୱପ୍ନର ଅଭିଳାଷ
ସେଇଥିପାଇଁ
ତୋ' ଯୋଜନାର ନକ୍ସା ସବୁ
ପିନ୍ଧୁଛନ୍ତି ଅହରହ ଶୃଙ୍ଖଳା ଫୁଲର ମାଳ ।।

ଆଉ ଗୋଟେ ଶତାବ୍ଦୀପରେ
ହୁଏ ତ ତୁ ଫେରି ପାଇବୁ ତୋ' ଅତୀତର ଯଶ,
ଯୋଉଦିନ କୌତୁକରେ
କିରି କିରି ହସି ଉଠିବେ
ଚିହ୍ନା ଚିହ୍ନା ଚାଂନ୍ଦିନୀର ମନ
ସେଇଦିନ
ମହାଦ୍ରୁମ ପରି ଛାଇ ବାଣ୍ଟି ବସିବେ ସବୁ ମଲା ଦୁବ
ଘାସ ।।

ଅପେକ୍ଷା କରି ପାରିବୁ ତ ,
ଦେଖିବାକୁ
ସମୟର ଶ୍ମଶାନରେ ଧରମାର ଅଭିନବ ବେଶ ??

# ପ୍ରିୟ ପ୍ରଧାନପାଟ

ଫଣୀନ୍ଦ୍ର ଭୂଷଣ ନନ୍ଦ

ସଂସ୍କୃତିର ଫଜେରା ଫଟାଇ
ତୁ ଜନ୍ମିଛୁ
ଅବତରିଛୁ ଗହନ ଜଙ୍ଗଲର
ଅଲଙ୍ଘ୍ୟ ଈଶାରାରେ ।

ଏକ ନୀରବତାର ଶୋଭାଯାତ୍ରା
ମଉନ ସଙ୍ଗୀତ
ଅଜସ୍ର ବଣଫୁଲର ମହକରେ
ବାସ୍ନାୟିତ
ତୋର ଜନ୍ମ ଜାତକ
ମୋର ପ୍ରିୟ ପ୍ରଧାନପାଟ ।

ନା ପ୍ରକୃତିର ଇଂଗିତରେ
ନା ପର୍ବତର ଦାୟରେ
ତୋର ତାଣ୍ଡବ
ତୁ ଉର୍ଦ୍ଧ୍ୱସ୍ୱଳ ଶାଶ୍ୱତ ପ୍ରେମରେ
ଘୋଷୁଥାଉ ନିରନ୍ତର
ସୃଷ୍ଟିର ମଙ୍ଗଳ ।

ନା କୋଇଲିର କୁହୁ
ନା ବାଘର ହେଣ୍ଟାଳ
ସାନ୍ତାଳୀ ଝିଅ ପରି ସ୍ୱଚଳ
କାନ୍ତ କମନୀୟ
ତୋ ପ୍ରେମରେ ବଂଧାଏଠି
ଗଛ ବୃଛ ପଶୁ ପକ୍ଷୀ
ଜୀବନ ସକଳ ।

ପ୍ରିୟ ମୋର
ପ୍ରଧାନ ପାଟ
ଗାଉ ଥାଉ ଚିରଦିନ
ପ୍ରେମର ସଂଗୀତ ।
ଶବ୍ଦ ଯାତ୍ରା ତୋର
ଭେଟି ଅଛି ଅନେକ
ପଥିକ
ସଂଖ୍ୟାହୀନ ସହଯାତ୍ରୀ
କରିଛନ୍ତି ତୋର
ଶୁଭ ବନ୍ଦାପନ ।
"କାର ତୁହି ନେତ୍ର ପ୍ରୀତିକର
କିଏ କହେ ନୀର ଆସ୍ତରଣ ତୋର
ହୀରକକୁ ଦିଏ
ସହସ୍ରଧିକ୍କାର ।"
କିଏ ଦେଖେ ତପୋମୂର୍ତ୍ତି ତୋର
କଳ୍ପବ୍ୟାପୀ ସଂକଳ୍ପ ସାଧନେ",
ଶୁଣିଅଛୁ ଜୀବନ ଯାତ୍ରାରେ
ଅନ୍ତହୀନ ପ୍ରଶଂସାର ବାଣୀ
ଭେଟିଅଛୁ ଯୁଗାବ୍ଧି ପୁରୁଷ
ତୋ କୋଳରେ
କବିତାର ନାଂଦିପାଠ
ଅପୂର୍ବ ବିପଣୀ

ପ୍ରିୟ ମୋର ପ୍ରଧାନ ପାଟ
ଅତିପ୍ରିୟ ତୋହର
ରାଗିଣୀ
ଲିପିବଦ୍ଧ ଅତୀତର ଗାଥା
ତୋ ବଂଧୁର ଉପଳ ଶେଯରେ
ଲୁକ୍କାୟିତ
କାହାଣୀ ସ୍ୱପ୍ନର
ତୋ ବସନ୍ତ ପ୍ରେମକରେ
ଚୈତ୍ର ତୋର
ଶାନ୍ତ ଛାୟା ଦିଏ
ବସନ୍ତ ନିବାସ ତୋର
କବିତାର ବାଣୀ
ଉର୍ଦ୍ଧ୍ୱେ ତୋଳେ ।

ପ୍ରିୟ ମୋର ତୋ ଗହନ
ରାତି
ତୋ ସବୁଜ ଅନୁଚ୍ଚା ଆଶ୍ଳେଷ
ପାହାଡର ତୁଙ୍ଗିମାରେ
ବିରାଜିତ ସୁନୀଳ ଆକାଶ ।

ପ୍ରଧାନ ପାଟ
କବିତାର ପ୍ରିୟ
କବିର ପ୍ରିୟ
ଜୀବନର ରକ୍ତିମ ପଂକ୍ତିରେ
ଦେଖିଅଛି କେତେ ଜୟ
କେତେ ପରାଜୟ ।
ସାରସ୍ୱତ ଅଗଣାରେ
କବିତାର ବାଦ ବିସଂବାଦ
ରାଧାନାଥ ଗଙ୍ଗାଧର
ଅବା ଭଞ୍ଜୀୟ ସଙ୍ଗୀତ ।

ତୁ ଦେଇଛୁ ସାକ୍ଷ୍ୟତାର
ଗାଇଅଛୁ ମହାକାଳ ଜୟ ।
ତୁ ନୋହୁ ସୁପ୍ରାଚୀନ
ଅବା ଆଧୁନିକ
ତୁ ଅଟୁ ଆତ୍ମା ପରି
କାଳହୀନ ପୁଣି ମୃତ୍ୟୁଂଜୟ ।

ସତ୍ୟର ପ୍ରିୟ ତୁହି
ଶାଶ୍ୱତର ପ୍ରିୟ
କବିର ପ୍ରିୟ ତୁହି
କବିତାର ପ୍ରିୟ
ଅଶାନ୍ତ ଦୁର୍ନିବାର ଜୀବନରେ
ମମତାର ସବୁଜ ବିଗ୍ରହ
ତୋ ଅସ୍ପଷ୍ଟ ଗୁଞ୍ଜନରେ
ଗାଇଯାଉ
ଜଗତର ଜୟ ॥

# ବସନ୍ତ ନିବାସର ଉଦ୍‌ବୋଧନ

## (ଅମିତ୍ରାକ୍ଷର ଛନ୍ଦ)

ସାରସ୍ୱତ-ଉପବନ-ବିହାର-ରସିକ
ଦେବଦୁର୍ଗ-କବିକୁଳ ଶାଶ୍ୱତ ନୟନେ
ଦେଖୁଥିଲେ ପ୍ରଭାମୟୀ-ନିର୍ଝରିଣୀ ବେଣୀ,
ପବିତ୍ର ଅମଳ ହରଶୈଳ-ହିମବାନ-
ଗଙ୍ଗା ଉପବୀତସମ ପ୍ରକୃତି-ଆଲେଖ୍ୟ;
ଶୀକର ଜଳଦଘଟା ପୁଞ୍ଜୀଭୂତ ଶିଖ
(ମନ୍ଦାକିନୀ-ଫେଣ ଯଥା ଚନ୍ଦ୍ରଚୂଡ ଶିରେ)
ପ୍ରଧାନ ପ୍ରଧାନପାଟ ଶିଖର ଦେହରେ
କର୍ଣ୍ଣ ରସାୟନ ଯହିଁ ପୁଂସ୍କୋକିଳ ରୁତ,
ମିଶି ସୁଲଳିତ ତାନେ ଭରଟିଆ ସ୍ୱନେ ।
ପ୍ରପାତେ ପ୍ରପାତ ବନ୍ଧୁ ମଧୁର କୂଜନେ,
ମୁଖରିତ କରି ସଦା ବନ ଦରି-କୋଳ
ପ୍ରସ୍ରବଣ-ଜଳକଣା ଅନ୍ତଃସାର ରୂପୀ
ସୁବାସ-ସମୀର କୋଳେ ନିତ୍ୟ ଖେଳି ବୁଲେ
ସ୍ନିଗ୍ଧମୁଗ୍ଧ-ସୁରମ୍ୟ-ନୀଳ ବ୍ୟୋମ ପଟ ତଳେ
ରସାଇ ଜଙ୍ଗମେ ପୁଣି ରସାଇ ସ୍ଥାବରେ
ବସନ୍ତର ସ୍ମୃତି ସଦା ମନେ ଉପୁଜାଇ ;
ସେ ଶିଖର ଛାୟାତଳେ ସୁରମ୍ୟ ପ୍ରାସାଦ,
ବିଷ୍ଣୁ-ଆୟୁଧ-ଲାଞ୍ଛିତ ଧ୍ୱଜ ଯାର ଚୂଡେ
ଚିନାଂଶୁକ ଉଡୁଥାଇ ଫର ଫର ହୋଇ
ପ୍ରପାତ ବିନ୍ଦୁ ଉତ୍‌ଥିତ ସମୀର ଲହରେ
ଲହରାଇ ଭାବ ଊର୍ମି କବିକୁଳ ହୃଦେ ।
ବସନ୍ତର ନିତ୍ୟ ଲୀଳା ପ୍ରକୃତି ଦେହରେ
ଦେଖି ବୋଲାଇଲା ଏହି "ବସନ୍ତ ନିବାସ"
ସକାର ଭେଦରେ ନାନା ଅର୍ଥ ସନ୍ନିବେଶେ
ଲଳିତ-ଲଳନା-ଚାରୁ-ଆକଳ୍ପ-ସଦୃଶ
ରଚି ନାନା ଭାବଗମ୍ୟ ସାରସ୍ୱତ ଛନ୍ଦ
ପ୍ରଧାନ ପାଟ ଈଶ୍ୱରୀ ଦେବୀ ଚାରୁ କଣ୍ଠେ
ଲମ୍ବାଇଲେ,କାବ୍ୟ-ଦାମ ଗୁନ୍ଥି ସଯତନେ
କବିତା କାନନୁ ବାଛି ବାଛି ପୁଷ୍ପରାଜି,
ଯଥା ଲୂତାତନ୍ତୁ ସ୍ୱତଃ ପଟ ସନ୍ନିବେଶେ
ପ୍ରପାତ-ଭୃଗୁ-ପତିତ-ସୁମନ ସୁବାସ
ଗୁନ୍ଥି ହୋଇ ଶୋଭେ ବନ ଲକ୍ଷ୍ମୀ ଉରପରେ
ନିସର୍ଗ ପ୍ରଧାନପାଟ ଦେବୀ ମାହେଶ୍ୱରୀ
ବିରାଜିତ ଯାର ପାଦପୀଠ,ଗଙ୍ଗା-ସୃତ
-ମୌଳି-ବିଘଟିତ-ରନ୍ଦ୍ର-ଦୀପଶିଖୋଜ୍ଜ୍ୱଳେ ।
କଲ୍ୟାଣୀ କଲ୍ୟାଣେ ହେଉ ,ଏ ସ୍ଥଳୀ ସନ୍ତତେ
ସେହି "ଗଙ୍ଗ କୁଳ-ଈଶ-ବିଳାସର ସ୍ଥଳ
ବିରାଜି ଏ ଗୀତ କାବ୍ୟ ଅମର ଅକ୍ଷରେ"
ତା:୨୬-୯-୧୯୦୯
ଭାଦ୍ରବ ଶୁକ୍ଳପକ୍ଷ ଏକାଦଶୀ ସୁନିଆଁ ।

### -ରାଗ ବସନ୍ତ-

ପ୍ରକୃତି ବିଚିତ୍ର ଚାରୁ ଚିତ୍ରପଟ
ମୂର୍ତ୍ତିମନ୍ତ ଯହିଁ ହୋଇଲା ।
ବିହଗ କାକଳୀ କଳ-ଜଳ-କେଳି
ବସନ୍ତ ଶୋଭାକୁ ବଢ଼ାଇଲା
ବିଚିତ୍ର,
ଭଲା ଚିତ୍ରକାର ଚିତ୍ରିଲା
ବସନ୍ତେ 'ନିବାଶ' 'ନିବାଷ'ନିବାସ
ଏକାଧାରେ ଆଣି ଥୋଇଲା ॥

*ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ।*

### ବସନ୍ତ ନିବାଶ

-ବସନ୍ତ ବୃତ୍ତେ-

କଳକଣ୍ଠ ଯହିଁ ନିରତେ କୂଜଇ
ସୁରମ୍ୟ-ବସନ୍ତ ରାଗରେ,
ରସାଇ ପ୍ରେୟସୀ କୋକିଳା-ହୃଦୟ
ଭସାଇ ସମୀର-ସାଗରେ ।
ନିତ୍ୟରେ ,
ଭ୍ରମର-ଗୁଞ୍ଜନ ମିଶାଇ
ଏହିସେ 'ବସନ୍ତ-ନିବାଶ'ଯହିରେ
ବସନ୍ତ-ବିହଗ ରମଇ ॥

*ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ।*

## ବସନ୍ତ ନିବାଷ
(ବସନ୍ତ ବୃତ୍ତରେ)

ମାର୍ତ୍ତଣ୍ଡ-ମୟୂଖ       ବର୍ଣ୍ଣ-ବିଶ୍ଳେଷଣେ
ଜଳ ଉତ୍ସ ଯହିଁ ଭାସ୍ୱର
ଉଦିଚୀ-ଲଲାଟ      ସ୍ଥିର ତଡିତ୍-ଲତା-
ସମ ଶୋଭା ବହି ସୁନ୍ଦର ।
ଯହିଁରେ,
ଶକ୍ର,ଚାପ ଦୃଶ୍ୟ ବାହାର ।
ସେହି ଏ 'ବସନ୍ତ ନିବାଷ' ବସନ୍ତେ
ଜଳ କେଳି ଯହିଁ ଅଜର ।

ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ

## ବସନ୍ତ ନିବାସ
(ବସନ୍ତ ବୃତ୍ତରେ)

ଦର-ବିକଶିତ              ସଜ ସୁମନାରୁ
ଗନ୍ଧବହ ବାସ ଚୋରାଇ,
କଳ୍ପନା-ସୁନ୍ଦରୀ             ଚିତ୍ତ ତୋଷୁଥାଇ
ବନପ୍ରିୟ ଗୀତ ମିଶାଇ
ବସନ୍ତେ,
ବସନ୍ତ ବିଭବ ଲଳିତ;
ବସନ୍ତ-ସ୍ମୃତିକୁ ଉପୁଜାଏ ଯେଣୁ 'ବସନ୍ତ-ନିବାସ' ଏହିତ ।

ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ।

(ବସନ୍ତ ବୃତ୍ତରେ)

ଜୀବନ ବିହଗ               ବିହଗ ଜୀବନ
ବନପ୍ରିୟ ବନ ଜୀବନ,
ନୀଳ ନୀଳକଣ୍ଠ              ଖଞ୍ଜରୀଟ ମଧୁ-
-ଲିଟ ପଞ୍ଚାନନ ଭୂଷଣେ;
ମଣ୍ଡନେ,
ମଣ୍ଡିତ ବାସନ୍ତ ଏ ବାସ,
ବସନ୍ତ-ନିବାଶ,ବସନ୍ତ ନିବାଷ,ଲଳିତ ବସନ୍ତ ନିବାସ ।

ଶ୍ରୀ ସୋମନାଥ ଶତପଥି
ଜ୍ୟୋତିଷାଳଙ୍କାର ।

(ବସନ୍ତ ବୃତ୍ତେ)

ଏ ପ୍ରଧାନ ପାଟ          ନିକୁଞ୍ଜେ ବିରାଟ
ସଉଧ ସୁମନେ ହସେ ଯେ,
ବିହଗ କୂଜନେ          ଝର ଗରଜନେ
ଭୃଗୁଦେଶେ ଆସି ଭାଷେ ଯେ,
ଏ ନିତ୍ୟେ,
ମଳୟ ପବନ ସେବିତ,
ବସନ୍ତ-ନିବାଷ, ବସନ୍ତ-ନିବାଶ-ବସନ୍ତ
ନିବାଶ ଏହିତ ।

ଶ୍ରୀ ଜଗନ୍ନାଥ ପଟ୍ଟନାୟକ ।

(ବସନ୍ତ ବୃତ୍ତରେ)

ନିତ୍ୟ ଯେ ସ୍ଥଳରେ              ବୀ-ରାଜି ବିରାଜି
ତୋଳନ୍ତି ସୁସ୍ୱର ଲହରୀ
ପ୍ରବାହିତ ଯହିଁ :              ମୃଦୁ କଳନାଦେ
ସଳୀଳେ ସଳୀଳ-ଲହରୀ,
ବସନ୍ତେ
ବସନ୍ତର ସ୍ମୃତି ପ୍ରକାଶ
ସେହି ଏ ବସନ୍ତ-ନିବାଶ-ବସନ୍ତ-ନିବାଷ-ବସନ୍ତ-ନିବାସ ।

ରାଜକୁମାର ଶ୍ରୀମାନ୍ ଲାଲ ରାଜୀବ ଲୋଚନ ଦେବ ।

(ବସନ୍ତ ବୃତ୍ତରେ)

ଭାବମୟ-ଭିତ୍ତି-        ପଟେ ମୂର୍ତ୍ତିମନ୍ତ
ପ୍ରକୃତି-ଆଲେଖ୍ୟ-ପ୍ରମୁଖ
ଶକୁନ୍ତ କାକଳୀ       କଳ-ଜଳ-କେଳି
ରଞ୍ଜିତ୍-ମାର୍ତ୍ତଣ୍ଡ-ମୟୂଖ
ବିଚିତ୍ର,
ଚିତ୍ରିତ ବସନ୍ତ ନିବାସ,
ଏଣୁ ଏ 'ବସନ୍ତ-ନିବାଶ'-'ବସନ୍ତ
ନିବାଷ'-'ବସନ୍ତ-ନିବାସ' ।

ରାଜା ସଚ୍ଚିଦାନନ୍ଦ ।

(ବସନ୍ତ ବୃତ୍ତ)

ବସନ୍ତ ଆଗମେ ଶକ୍ରୁତ କୂଜନେ
ମୁଖରିତ ଯେଉଁ ଭବନ
ପ୍ରପାତ ମସ୍ତକେ ଜଳ-ଜ୍ୟୋତିରୂପେ
ଦର୍ଶାଇ ଶକ୍ର ଶରାସନ,
ଯା କକ୍ଷୁ,
ସମୋଷ୍ଣ-ଶୀତଳ ଏ ବାସ
"ବସନ୍ତ-ନିବାଶ" 'ବସନ୍ତ-ନିବାଷ'-
ଏ ଯୋଗ୍ୟ 'ବସନ୍ତ-ନିବାସ'।

ଶ୍ରୀ ଜଳନ୍ଧର ଦେବ ।

(ବସନ୍ତ ବୃତ୍ତ)

ଉଦୀଚୀ ଲଲାଟ ଦିଶଇ ବିରାଟ
ପ୍ରଧାନ ପାଟ ଭୂଧରେ,
ଯାମ୍ୟେ ସୁଶୋଭନ ନନ୍ଦନ କାନନ
ନିରନ୍ତର ବାସ ପ୍ରସରେ
ବସନ୍ତେ,
ବିବିଧ ଅରଣ୍ୟ ବିହଗ,
ବାସନ୍ତି-ମଦିରାପାନେ ଘୋଷୁଛନ୍ତି
ବସନ୍ତ ନିବାଶ ପ୍ରସଙ୍ଗ ।

ଶ୍ରୀ ଶଶୀଭୂଷଣ ରାୟ

(ବସନ୍ତ ବୃତ୍ତ)

ବସନ୍ତରେ ନିତ୍ୟ 'ବାଶ' ଶବ୍ଦ ଅର୍ଥେ
କୂଜନ ଯହିଁରେ ପ୍ରକାଶ,
ପୁଣି ବସନ୍ତରେ ନିତ୍ୟ 'ବ' ଅର୍ଥରେ
ଜଳ "ଅଷ" ଅର୍ଥ ଆଭାସ
କୋବିଦେ,
ଭବନର ନାମ ନିବାସ,
ଏଣୁ ଏ ବସନ୍ତ-ନିବାଶ, ବସନ୍ତ-ନିବାଷ,
ବସନ୍ତ-ନିବାସ ।

ଶ୍ରୀ ଦୀନବନ୍ଧୁ ପ୍ରଧାନ ।

(ଲଳିତ ବସନ୍ତ ରାଗରେ ପ୍ରକାଶ)

ତ୍ରିଭୁବନ ଦେବ ହୃଦୟ ହାରକ
ଏହି ସେ ବସନ୍ତ ନିବାଶ
ତ୍ରିଭୁବନଦେବ ହୃଦୟ ହାରକ
ଏହି ସେ ବସନ୍ତ ନିବାଷ
ତ୍ରିଭୁନ ଦେବ-ହୃଦୟ ହାରକ
ଏହି ସେ ବସନ୍ତ-ନିବାସ

ମିଶ୍ର ଶ୍ରୀ ବ୍ରଜବନ୍ଧୁ ଦେବ ଶର୍ମା ।

(ବସନ୍ତ ବୃତ୍ତ)

ବସନ୍ତ ରାଜାର ଚିର ବାସ ସ୍ଥାନ
ଯହିଁ ଇନ୍ଦ୍ରଧନୁ ପ୍ରକାଶ
ଝର୍ଝର ନିନାଦି- -ପ୍ରପାତ-ସଳିଳେ
ସୂର୍ଯ୍ୟ-କରେ ହରେ ମାନସ
ବିହଙ୍ଗ,-
-କୂଜନେ ସେ ସ୍ଥଳେ ସରସ
ସେହି ଏ ବସନ୍ତ-ନିବାସ,
ବସନ୍ତ ନିବାଷ,ବସନ୍ତନିବାଶ ।

ରାଜକୁମାରୀ ଶ୍ରୀମତୀ କୁମୁଦ୍‌ବତୀ ଦେବୀ ।

(ବସନ୍ତ ବୃତ୍ତ)

ପ୍ରକୃତି ଲଳନା ଅଞ୍ଚଳ ଅଁନିଳେ
ସଞ୍ଚରି ବିହଗ କୂଜନ
ଜଳକେଳି-କଳ- ସ୍ୱନେ ମିଶେ ଯହିଁ
ହସାଏ ଶାଶ୍ୱତ ଜୀବନ ମାଧବ,
କରେ ଯହିଁ ଚିର ବିଳାସ,
ସେହି ଏ ବସନ୍ତ-
ନିବାଶ,ବସନ୍ତ-ନିବାଷ,ବସନ୍ତ-ନିବାସ ।

ରାଜକୁମାର ଶ୍ରୀ ଦୁଷ୍ମନ୍ତ ଦେବ ।

(ବସନ୍ତ ବୃତ୍ତ)

କୋକିଳ କୂଜନ      ମଧୁବ୍ରତ ସ୍ୱନ
ନିସର୍ଗ ବିପଞ୍ଚୀ-ଝଙ୍କାର
ଜଗତୀ ଚତ୍ୱରେ      ଶ୍ରବଣ ବିବରେ
କରଇ ପିୟୁଷ ସଞ୍ଚାର
ତା ସଙ୍ଗେ,
ପ୍ରସୂନ ସନ୍ଦୋହ ସୁବାସ
ମଳୟ ଅନିଳ ହିଲ୍ଲୋଳେ  ହୋଇଛି
ସାର୍ଥକ ବସନ୍ତ ନିବାସ

*ଶ୍ରୀ ଶଶୀଭୂଷଣ ରାୟ ।*

(ବସନ୍ତ ବୃତ୍ତେ)

ସକାର ଭେଦରେ    ବିହଗ ନିନାଦ୍
ସ୍ଫୁରୁଛି 'ବସନ୍ତ-ନିବାଶ'
ଚିଦାନନ୍ଦ କରେ    ଉସ୍ୱେ ବାତାଘାତେ
ସୁନ୍ଦର 'ବସନ୍ତ-ନିବାଷ'
ଦାବାଗ୍ନି,
ନ ବାଧେ ସ୍ୱାସ୍ଥ୍ୟକର ବାସ
ନନ୍ଦ ବିନିମୟେ ଗୁଚି କରେ ଏସେ
ବସନ୍ତେ 'ବସନ୍ତ-ନିବାସ'

ରାଜକୁମାର ଶ୍ରୀ ବୃନ୍ଦାବନ ଚନ୍ଦ୍ର ଦେବ ।

(ବସନ୍ତ ବୃତ୍ତ)

ସରସ ବିଚିତ୍ର      ଭଙ୍ଗୀରେ ସର୍ବଦା
ଗାନ କ୍ରୀଡାରେ ଆନନ୍ଦରେ
ପତତ୍ରୀ ନିରତେ      ତଳେ ଭୂ ଭୃଗୁରୁ
ବନ ଖସେ କଳ ସ୍ୱନରେ
ଯେ ଦେଶେ,
ସର୍ବଦା ବସନ୍ତ ନିବସେ,
ବସନ୍ତ-ନିବାଶ,ବସନ୍ତ-ନିବାଷ,
ବସନ୍ତ-ନିବାସ ଏହି ସେ ।

ଶ୍ରୀ ରତ୍ନାକର ଶର୍ମା ।

(ବସନ୍ତ ବୃତ୍ତ)

ସତ ସତ "ବ"-ବିବୃତ      ଭାଷେ ଯହିଁ
ସଦା ସଦାଗତି ଲହରେ
ଚିଦାନନ୍ଦ ଦାୟି      ସ୍ୱଚ୍ଛଉସ୍ ଯହିଁ
ମଧୁର ମୃଧୁରେ ପ୍ରସାରେ ।
ଦେବଭୂ,
ରାଜନ ବସନ୍ତ-ନିବାସ
ଏହି ସେ ବସନ୍ତ ନିବାଶ,ବସନ୍ତ-
ନିବାଷ ,ବସନ୍ତ-ନିବାସ

ରାଜକୁମାର ଶ୍ରୀ ବଳଭଦ୍ର ଦେବ ବଡକୁମାର

(ବସନ୍ତ ବୃତ୍ତ)

ଅଜିର ନାୟକ      ବାସବ ସଞ୍ଚିତ
ମନ୍ଦାର ବନଶ୍ରୀ ନନ୍ଦନ
ରାତ୍ରୀଶ ବିଭୂତି-      ଭବନ କାନନ
ଯେ ଦେବ ଭୂବନ ଦମନ
ବିହାର
ବି-ରାଜି କୂଜନେ ମିଶ୍ରିତ,
ପ୍ରପାତ ଝର୍ଝର ଆଭାଷେ ନିବାଶ
ନିବାଷ ନିବାସ ବସନ୍ତ

ଶ୍ରୀ ଗଦାଧର କୁଅଁର

(ବସନ୍ତ ବୃତ୍ତ)

ଶ୍ରୁତି ରସାୟନ      ସଞ୍ଜୀବନୀ ସୁଧା
ଢାଳଇ ଲଳିତେ କୋକିଳ
ଢଳ ଢଳ ହୋଇ      କଳ କଳ ନାଦେ
ଲୋଟି ଖେଳେ ଝର ସଲିଳ ।
ବିଳସେ,
କୁସୁମିତ କୁଞ୍ଜେ ଭ୍ରମର ।
ବସନ୍ତ-ନିବାଶ,ବସନ୍ତ-ନିବାଷ,
ବସନ୍ତ-ନିବାସ ସୁନ୍ଦର ।

ଶ୍ରୀ ହରିହର ମହାପାତ୍ର ।

(ବସନ୍ତ ବୃତ୍ତ)

ବସନ୍ତ-ନିବାଶ ବିହଗ କାକଳୀ
କରେ ଶ୍ରୁତି ସଦା ମଧୁର
ପ୍ରପାତ ନିର୍ଝର ନିନ୍ଦି ହୀରା ଦୀପ୍ତି
ନିନ୍ଦେ ଦୀପ୍ତି ଉତ୍ସ ବିଧୁର ।
ଏଣୁ ଏ,
ଅଟଇ ବସନ୍ତ ନିବାଷ
ସଦା ବସନ୍ତର ଲୀଳାକ୍ଷେତ୍ର ଯୋଗୁଁ
ଏହି ସେ ବସନ୍ତ-ନିବାସ
ରାଣୀ ଡମ୍ବରୁଧର ପ୍ରିୟା ।

(ବସନ୍ତ ବୃତ୍ତ)

ଅବିରଳ ଲୋଳ ବିମଳ ସଳିଳ
ଶଇଳେ ସଲିଳେ ନିନାଦେ
ବଢାଇ ବଢାଇ ସୁମଧୁର ତାନ
ତୋଳଇ ବାସନ୍ତ-ବିବାଦେ
ବାସନ୍ତୀ,
-ଯହିଁ ପ୍ରକଟଇ ବିଶେଷେ,
ବସନ୍ତ-ନିବାଷ,ବସନ୍ତ-ନିବାଶ;
ବସନ୍ତ-ନିବାସ,ଏହିସେ
ରାଜକୁମାର ଶ୍ରୀ ଲଳିତ ମୋହନ ଦେବ

(ବସନ୍ତ ବୃତ୍ତେ)

ଉତ୍ସ ଉଭାସିତ ଶକ୍ରଚାପ ଶିର
କିରୀଟ ଭୂଷଣ ଯାହାର,
ପ୍ରଶଂସା ଲହରୀ ପିକ ବୈତାଳିକ
ସ୍ତୁତିରେ ହୁଏ ଯା ପ୍ରଚାର
ସେହି ଏ,
ବସନ୍ତ-ରାଜନ ନିବାସ
ଏ ଘେନି ବସନ୍ତ-ନିବାଷ,ବସନ୍ତ-
ନିବାଶ,ବସନ୍ତ-ନିବାସ ।
ରାଜକୁମାର ଜୟନାରାୟଣ ଦେବ ।

(ବସନ୍ତ ବୃତ୍ତ)

ବସନ୍ତ-ନିବାଶ ବସନ୍ତ-ନିବାଷ
ବସନ୍ତ-ନିବାସ ଏ ବାସ
ବିହଙ୍ଗ କାକଳୀ ସ୍ୱଚ୍ଛ ଜଳକେଳି
କରୁଛି ନାମକୁ ପ୍ରକାଶ
ଯହିଁରେ,
ମଳୟ ସଧୀରେ ବହଇ
କୁସୁମ ସୌରଭ ଚହଟି ଚୌଦିଗେ
ବସନ୍ତ ସ୍ମୃତିକୁ ଜାଗଇ ।
ଶ୍ରୀ କୃଷ୍ଣଚନ୍ଦ୍ର ନନ୍ଦ ।

## ବସନ୍ତ ବାସ

ଶୈଳୋଦ୍ଗୀର୍ଣ୍ଣ ପ୍ରବାହୋଜ୍ଜ୍ୱଳ ଜଳ ନିବହା ସାରବାତାର୍ଭିଘାତୋ-
କ୍ଷିପ୍ତାମ୍ଭଃ ଶୀକରୌଘ ପ୍ରଶମିତ ବିପିନ-ଶ୍ରେଣୀ ହର୍ମ୍ୟାଙ୍ଗରାଜିଃ ।
ବଲ୍ଲୀଜୋପତ୍ୟକାୟାମନିବରତ କୁହୂଃ କଣ୍ଠନାଦୈର୍ବସନ୍ତ-
ବାସୋ ରମ୍ୟୋ ପୁରାନ୍ତେ ତ୍ରିଭୁବନ ନୃପତେ ସଚ୍ଚିଦାନନ୍ଦ ନାମ୍ନଃ
।

ଶ୍ରୀ କାଳୀଚରଣ ଦ୍ୱିବେଦୀ , ବିଦ୍ୟାଭୂଷଣ ।

(ବସନ୍ତ ବୃତ୍ତ)

ସ୍ୱର୍ଗଦ୍ୱାର ପାଶେ ଦେଖରେ ହରଷେ
ବସନ୍ତ-ନିବାସ ରାଜେ
ଅମର ନିବାସୀ ରାଜ ଦମ୍ପତି ଏ
ବିହରନ୍ତି ନାନା ସାଜେ ।
ସ୍ୱର୍ଗ ମନ୍ଦାକିନୀ- ପ୍ରବାହ ରୂପିଣୀ
ନିସର୍ଗ ପୁଣ୍ୟ-ପ୍ରପାତ
ବସନ୍ତ ଆଗାରେ- ନିସର୍ଗ ପ୍ରକାରେ
ଯହିଁ ହୋଇଛି ଆଖ୍ୟାତ ।
ତ୍ରିଭୁବନ ଦେବ- ଦେବ ଅବତାର
ଅବତୀର୍ଣ୍ଣ ଧରାଧାମେ
ବସନ୍ତ ଆବାସେ- ବସନ୍ତ ନିବାସେ
ବିହରନ୍ତି-ରମ୍ୟାରାମେ ॥
ସ୍ୱର୍ଗ ଦେବତାଏ- ଆଶିଷ କରନ୍ତୁ
ଗଳେଦେଇ ପୁଷ୍ପହାର
ତ୍ରିଭୁବନ ଦେବ- ଦୀର୍ଘଜୀବୀ ହୋଇ
ହର ପ୍ରଜା ଦୁଃଖ ଭାର ।

ଶ୍ରୀ ରାମକୃଷ୍ଣ ଶାହା

(ବସନ୍ତ ବୃତ୍ତ)

ଚାନ୍ଦନୀ ଉପରେ ଚାନ୍ଦନୀ ରାତିରେ
ସୁଧା ବିମଣ୍ଡିତ ଋତୁରେ
ଚମ୍ପା ଚୂତ ବାସ ଚନ୍ଦ୍ରିକା ଆକାଶ
ଚିତ୍ତକୁ ମୋହିବ ସତ୍ୱରେ ।
ବସନ୍ତ;
ନିବାଷ କ୍ଷଣେ କରେ ଭୋଗ
ତ୍ରିଭୁବନ ଦେବ କଳ୍ପନା ଚାତୁରୀ
ଜାଣିବ ପରଶଂସା ଯୋଗ ।

ଶ୍ରୀ ଶଶୀଭୂଷଣ ରାୟ

(ଗୋମୁତ୍ର ଛାନ୍ଦ)
ବସନ୍ତ ବୃତ୍ତ
ବସନ୍ତ ନିବାସେ ଦେଖି ଶଷ ଭେଦ କବିଏ ପ୍ରତିତ
ନିବେଶେ
ଭାଷନ୍ତ ନିଶେଷେ ପକ୍ଷୀ ରସ ନାଦ
ଛବିଳ ପ୍ରକୃତି ଆବେଶେ
ନାସ୍ତୁ ଯେ ; ରସାଳ ସାଳ ତାର ବେଶେ
ବ୍ୟସ୍ତ ସେ ରସାଳ ସାଳ ତାର ପାଶେ
ଛବିଳ ପ୍ରକୃତି ପ୍ରବେଶେ

ପଣ୍ଡିତ ଶ୍ରୀ ଭାଗିରଥି ଶର୍ମା ।









## ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

ଜନ୍ମ-୩୦-୧୨-୧୯୫୯

ସଙ୍କଳକ ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ ଉତ୍ତର ଅଶି ଓଡ଼ିଆ ସାହିତ୍ୟର ଏକ ସମ୍ଭାବନାମୟ ଉଚ୍ଚାରଣ । ତାଙ୍କର ସାରସ୍ୱତ ସ୍ୱାକ୍ଷର ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ନିରବଚ୍ଛିନ୍ନ ପ୍ରକାଶିତ ଓ ପ୍ରଶଂସିତ । ତରଳ ସ୍ମୃତିର ଗନ୍ତାଘର, ଅଲୋଡ଼ା ଶବ୍ଦ ଓ ଅନ୍ତଃ ପ୍ରକୃତିର ସ୍ନିଗ୍ଧ ପରିପାର୍ଶ୍ୱରୁ କବିତାର ଉତ୍ସ ସଂଧାନ ହିଁ ତାଙ୍କର ସାହିତ୍ୟ । ଅନାଲୋଚିତ ସାରସ୍ୱତରଥିମାନଙ୍କୁ ସମ୍ମାନ ପ୍ରଦାନ ତାଙ୍କର ଅନ୍ୟତମ ବୈଶିଷ୍ଟ୍ୟ । ବାମଣ୍ଡାର ସାରସ୍ୱତ ଐଶ୍ୱର୍ଯ୍ୟକୁ ପାଠକ ସମ୍ମୁଖରେ ଉନ୍ମୋଚିତ କରିବାରେ ତାଙ୍କର ମନନଶୀଳ ଦୃଷ୍ଟିଭଙ୍ଗୀର ସାମର୍ଥ୍ୟ ପ୍ରତିପାଦନ ।

ଜଳନ୍ଧର ଦେବଙ୍କ ସାରସ୍ୱତ କୃତି ଉପରେ ଗବେଷଣା କରି ୨୦୦୨ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ Ph.D. ଡିଗ୍ରୀପ୍ରାପ୍ତ । ସଂପ୍ରତି ଓଡ଼ିଶା ସାହିତ୍ୟ ଏକାଡେମୀ ସାଧାରଣ ପରିଷଦର ସଦସ୍ୟ, ଓଡ଼ିଆ ଗବେଷଣା ପରିଷଦର ସଭ୍ୟ ଏବଂ ବାମଣ୍ଡା ସାହିତ୍ୟର ଜଣେ ଗୁଣମୁଗ୍ଧ ପାଠକ ।

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କ ସାରସ୍ୱତ ଫସଲ :

୧ : ନିଶବ୍ଦ ଆକାଶର ଡାକ (୧୯୯୩)
୨ : ଅରଣ୍ୟର ଡାକ ( ୨୦୦୦)
୩ : ସମ୍ବଲପୁର ହିତୈଷିଣୀ : ଏକ ଅଧ୍ୟୟନ (୨୦୦୨)
୪ : ଶୂନ୍ୟବିନ୍ଦୁ (୨୦୦୨)
୫ : ବଣ ରାଇଜ (୨୦୦୨)
୬ : ସାହିତ୍ୟ ସାଧକ ଜଳନ୍ଧର ଦେବ (ଯନ୍ତ୍ରସ୍ଥ)

ପ୍ରକାଶକ